# ବନ୍ଦନିକା

ପ୍ରଫେସର ଶରତ ଚନ୍ଦ୍ର ରଥ
ଏମ.ଏ., ଏମ୍.ଫିଲ୍., ପିଏଚ୍.ଡି.
ମୋ : ୯୪୩୭୭୫୬୨୪୦

ପ୍ରକାଶକ : ପଥିକ ପ୍ରକାଶନୀ, ଭୁବନେଶ୍ୱର

ପ୍ରଥମ ମୁଦ୍ରଣ : ୨୦୧୯



ମୁଦ୍ରଣ : ଦିବ୍ୟ ମୁଦ୍ରଣୀ,
ଦିବ୍ୟବିହାର, ଭୁବନେଶ୍ୱର-୨

ପ୍ରାପ୍ତିସ୍ଥାନ : ଇ.ବି.-୬୫୭
ବଡ଼ଗଡ଼ ବ୍ରିଟ୍ କଲୋନୀ, ଭୁବନେଶ୍ୱର
ଯୋଗାଯୋଗ: ମୋ: ୯୪୩୭୭୫୬୨୪୦

ମୂଲ୍ୟ : ₹ ୧୦୦/- (ଶହେ ଟଙ୍କା ମାତ୍ର)

ଜୀବନର ବନ୍ଦନା ଏବଂ ଦିବ୍ୟଶକ୍ତିର ବନ୍ଦନା ଏଥିରେ ଉପସ୍ଥାପିତ ହୋଇଥିବାରୁ ଏ ପୁସ୍ତକଟିର ନାମ 'ବନ୍ଦନିକା' ରଖାଯାଇଛି ।

ପରମାରାଧ୍ୟ
ଶ୍ରୀମାଶ୍ରୀଅରବିନ୍ଦଙ୍କୁ ପୁସ୍ତକଟିକୁ
ସମର୍ପଣ କରି
ବଡ଼ଭାଇ ସାହିତ୍ୟାନୁରାଗୀ
ଶ୍ରୀସଚ୍ଛିଦାନନ୍ଦ ରଥଙ୍କ ହାତରେ ଦେଲି

ବିନୀତ
ଶରତ

# ଆଗରୁପଦେ....

ବିନ୍ଦୁରେ ସିନ୍ଧୁ ଦର୍ଶନ କରାଏ ଗୀତିକବିତା। ତାହା ଅଳ୍ପଶବ୍ଦରେ ବହୁଚିତ୍ର ଆଙ୍କେ । ବିଜୁଳିର ଝଲକରେ ମନଆକାଶକୁ ଆଲୋକିତ କରେ । ବାସ୍ତବତା ସହ ଭାବପ୍ରବଣତାକୁ ମିଶାଇ ଏକ ରଙ୍ଗମହଲ ଗଢ଼ିପାରେ । କବିତାର ଲଳିତଛନ୍ଦମୟୀ ଗାନପ୍ରତିମା ହେଉଛି ଗୀତିକବିତା। ଜନ୍ମଠାରୁ ମରଣ ପର୍ଯ୍ୟନ୍ତ, ଆକାଶରୁ ଧରିତ୍ରୀ ପର୍ଯ୍ୟନ୍ତ, ପାହାଡ଼ରୁ ସମୁଦ୍ର ପର୍ଯ୍ୟନ୍ତ ସବୁକିଛିର ବାର୍ତ୍ତା ଓ ବିଭବର ଉପସ୍ଥାପନା ସେ କରିପାରେ । 'ମିତଂ ଚ ସାରଞ୍ଚ ବଚୋ ହି ବାଗ୍ମିତା'- ଏହାର ମୌଳିକ ନିର୍ଯ୍ୟାସ।

ଏହି ଗୀତିମାଳାରେ ସ୍ଥାନିତ କେତେଗୋଟି ଗୀତିକବିତା ଭିନ୍ନଭିନ୍ନ ସମୟରେ ରଚିତ ଓ ଭିନ୍ନ ଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ। ପାଠକମାନଙ୍କ ଦ୍ୱାରା ଉଚ୍ଚପ୍ରଶଂସିତ ମଧ୍ୟ। ସେହିପାଠକୀୟ ପ୍ରେରଣା ହିଁ ଏ ପୁସ୍ତକର ମୁଦ୍ରଣର ହେତୁ । ପାଠକୀୟ ଶ୍ରଦ୍ଧା ହିଁ ଲେଖକୀୟ ଯାତ୍ରାପଥର ପରମପାଥେୟ। ଏହି ଅବକାଶରେ ପାଠକପାଠିକାମାନଙ୍କୁ ବିନମ୍ର କୃତଜ୍ଞତା ଜଣାଉଛି। ଝଙ୍କାର, ଅମୃତାୟନ, ସାବିତ୍ରୀ, ଇସ୍ତାହାର, ସମାରୋହ, ଗୀତିଗଙ୍ଗୋତ୍ରୀ, ସହଯୋଗୀ, କଥାକଥା କବିତା କବିତା, କାବ୍ୟଲୋକ, ଶ୍ୱେତସଙ୍କେତ, ପଞ୍ଚବଟୀ, ଅପୂର୍ବା, ଗୋଧୂଳି ପ୍ରଭୃତି ପତ୍ରିକାର ସଂପାଦକ/ସଂପାଦିକାମାନଙ୍କୁ କୃତଜ୍ଞତା ଜଣାଉଛି।  ଏହାର ଉତ୍କର୍ଷ ଓ ଅପକର୍ଷ ବିଚାର ସମ୍ମାନନୀୟ ପାଠକମାନଙ୍କ ହାତରେ ନ୍ୟସ୍ତ କଲି। ସେମାନେ କେବଳ ବିଚାରକ ନୁହନ୍ତି, ପ୍ରେରଣାଦାୟକଶକ୍ତି ମଧ୍ୟ। ଲେଖକଠାରୁ ପାଠକଙ୍କର ମନନଶୀଳତା ଅଧିକ ଗଭୀର- ଏ କଥାରେ ମୁଁ ଏକମତ ହୋଇଥିବାରୁ ପାଠକମାନଙ୍କୁ ମୁଁ ଅଧିକ ସମ୍ମାନପ୍ରଦାନ କରେ।

ଆମର ଧାରଣା ରହିଛି ଯେ ଗୀତିକବିତାର ଭାବବସ୍ତୁ ହେଉଛି କେବଳ ପ୍ରେମ ଓ ପ୍ରଣୟ । ମାତ୍ର ସେ ସମୟ ଅତିକ୍ରାନ୍ତ । ଏଥି ସହିତ ଜୀବନର ସୁଖଦୁଃଖ, ଭାବ ଅଭାବ, ସୁବିଧା ଅସୁବିଧା, ହସ କାନ୍ଦ ସହିତ ପ୍ରକୃତିର ମାର୍ମିକଚିତ୍ର ଏଥିରେ ଚମତ୍କାର ଭାବେ ଉପସ୍ଥାପିତ ହୋଇପାରେ । ପ୍ରତୀକ, ମିଥ, ଚିତ୍ରକଳ୍ପ ଏଥିରେ ରହିପାରେ । ଭାବ ଉପଯୋଗୀ ଶବ୍ଦମାଳା ଏଥିରେ ସଂଯୋଜିତ ହୋଇପାରେ । ଏହି ପୁସ୍ତକରେ ସ୍ଥାନିତ ସଂରଚନା ମଧ୍ୟରୁ କେତେକ ଯେ ସମ୍ପୂର୍ଣ୍ଣ ପ୍ରତୀକାତ୍ମକ, ତାହା ଲକ୍ଷ୍ୟଣୀୟ । କେତେକ ସ୍ଥଳରେ ମିଥ୍‌ର ଉପସ୍ଥାପନା ମଧ୍ୟ ଲକ୍ଷ୍ୟଣୀୟ । ଭକ୍ତିଗୀତିମାନଙ୍କରେ ପାରଂପରିକତା ଅପେକ୍ଷା ମନନଶୀଳତା ଉପରେ ଅଧିକ ଗୁରୁତ୍ୱ ପ୍ରଦାନ କରାଯାଇଛି ।

ପ୍ରଚ୍ଛଦପଟର ପ୍ରସ୍ତୁତି ନିମନ୍ତେ ମୋର ଛାତ୍ର ଶ୍ରୀମାନ୍ ବିଭୁପ୍ରସୂନଙ୍କୁ ଅସୀମ ଶ୍ରଦ୍ଧା ଓ ସାଧୁବାଦ ଜଣାଉଛି ।

ପରିଶେଷରେ ସମସ୍ତଙ୍କର କଲ୍ୟାଣକାମନା କରି ରହୁଛି ।

**ଡଃ ଶରତଚନ୍ଦ୍ର ରଥ**
ପ୍ରାକ୍ତନପ୍ରଫେସର, ଉତ୍କଳବିଶ୍ୱବିଦ୍ୟାଳୟ
ଭୁବନେଶ୍ୱର

# ସୂଚୀପତ୍ର

## ଆଧୁନିକ

| | | |
|---|---|---|
| ୧ | ଜୀବନ | ୯ |
| ୨ | ଆଉ ଥରେ | ୧୦ |
| ୩ | ଆଲୋକ ତୀର୍ଥ | ୧୨ |
| ୪ | ଅନୁରାଗ | ୧୪ |
| ୫ | ଅନୁଭାବନା | ୧୬ |
| ୬ | ତୁମେ ହିଁ ତୁମେ | ୧୮ |
| ୭ | ଅଭିଷେକ | ୧୯ |
| ୮ | ଜହ୍ନରାତି | ୨୧ |
| ୯ | ଅପେକ୍ଷାର ଭାଗଶେଷ | ୨୨ |
| ୧୦ | ଶରତ ଆସିଛି | ୨୩ |
| ୧୧ | କାଶତଣ୍ଡୀ | ୨୫ |
| ୧୨ | ମଧୁଜ୍ୟୋସ୍ନା | ୨୬ |
| ୧୩ | ତୁମେ ତ ଆସିଲ ନାହିଁ | ୨୭ |
| ୧୪ | ବରଷାଗୀତି | ୨୮ |
| ୧୫ | ନଦୀ | ୨୯ |
| ୧୬ | ତାକୁ ମୁଁ ଭେଟିବି | ୩୦ |
| ୧୭ | ଘାଟ ମୁକୁଳାନାଆ | ୩୧ |
| ୧୮ | ତୁମକୁ ଦେଇଛି ଧରା | ୩୨ |
| ୧୯ | କେଳି କୁସୁମ | ୩୩ |
| ୨୦ | ଅରୁଣିମା | ୩୪ |
| ୨୧ | ଅଭିମାନ | ୩୫ |
| ୨୨ | ବଉଦ ଡ଼ଙ୍ଗା | ୩୬ |
| ୨୩ | ନୂତନ ଉଷା | ୩୭ |
| ୨୪ | ବାସନ୍ତୀ ଗୀତି | ୩୮ |

୨୫ ଚିତ୍ରଛାୟା ୩୯
୨୬ ଶାରଦ ଜୋଛନା ୪୦
୨୭ ବିଶ୍ୱାସର ମୂଲ୍ୟ ୪୧
୨୮ ମେଘମାଳା ୪୨
୨୯ ବର୍ଷା ୪୩
୩୦ ଆଶା ୪୪
୩୧ ଭାବନାର ଜାଲ ୪୫
୩୨ ନଦୀ ଓ ସାଗର ୪୬
୩୩ ମଣିଷର ମନ ୪୭
୩୪ ସ୍ୱପ୍ନ ୪୯
୩୫ ମୂଲ୍ୟବୋଧ ୫୧
୩୬ ପାହିବ ରାତି ୫୩
୩୭ ଜହ୍ନରାତି ୫୪
୩୮ ଅବୁଝା ମନ ୫୫
୩୯ ଆସିଛି ବରଷା ୫୬
୪୦ ତୁମେ ୫୭
୪୧ କିଏ ତୁମେ ? ୫୮
୪୨ ପ୍ରତୀକ୍ଷା ୫୯
୪୩ ସ୍ମୃତି ସ୍ମରଣେ ୬୦

## ଭକ୍ତିଗୀତ

୪୪ ଛନ୍ଦାଚରଣ ! ୬୩
୪୫ ନୀରବ ନିଶୀଥେ ୬୪
୪୬ ମାଆ ଦଶଭୂଜା ୬୫
୪୭ ପୂର୍ଣ୍ଣିମା ଇନ୍ଦୁ ୬୭
୪୮ ଏତିକି ଭିକ୍ଷା ୬୮
୪୯ କସ୍ତୁରୀମୃଗ ୬୯
୫୦ ତୁମେ ହିଁ ସବୁ ୭୦
୫୧ ହେ ମହିମାମୟ ୭୧
୫୨ ମାଗୁଣି ୭୨
୫୩ ପ୍ରଭୁ ତୁମେ କେଉଁଠାରେ ? ୭୩
୫୪ ନିବେଦନ ୭୫

୫୫ ପ୍ରଣାମ ଚରଣେ ୭୬
୫୬ ଗାଏ ତୁମ ଯଶ ୭୭
୫୭ ତୁମ ନାମ ୭୮
୫୮ ଆଭୂମି ପ୍ରଣତି ୭୯
୫୯ ସେବା ଦାସ ୮୦
୬୦ ଖୋଜୁଛି ତୁମକୁ ୮୧
୬୧ ଅମୃତ ପ୍ରେମ ୮୨
୬୨ ମାଆଙ୍କ କୃପା ୮୩
୬୩ ଅଞ୍ଚଳ ନିଧି ୮୪
୬୪ ବଣାନାବିକ ୮୫
୬୫ ତୁମେ ଅଛ ବୋଲି ୮୬
୬୬ ଅନନ୍ତ ଅପାର ୮୭
୬୭ ଅଭିଳାଷ ହେଉପୂର୍ଣ୍ଣ ୮୮
୬୮ ଦିବ୍ୟଶାନ୍ତି ୮୯
୬୯ କାଳିଆ କାହ୍ନା ୯୦
୭୦ ତୁମେ ମୋର ପ୍ରଭୁ ୯୧
୭୧ ପୂର୍ଣ୍ଣକାମ ୯୨
୭୨ ଧ୍ରୁବତାରା ୯୩
୭୩ ଅନେକରେ ଏକ ୯୪
୭୪ ତଥାପି ରହିଛି ଆଶା ୯୬
୭୫ ନନ୍ଦିଘୋଷରଥ ୯୭
୭୬ ଘୋଷଯାତ୍ରା ୯୯
୭୭ ହାତ ଧରି ମୋର ୧୦୦
୭୮ ମତେ ମିଳୁ ୧୦୧
୭୯ ଏତିକି ଅଳି ୧୦୨
୮୦ ଜୟ ଜଗନ୍ନାଥ ୧୦୪

# ଜୀବନ

ତୁମେ କେତେବେଳେ ଶରତ ସକାଳ
ମାଧବୀ ଜୋଛନାରାତି
ଆଉ କେତେବେଳେ ହେମନ୍ତ ନିଶୀଥ
ଉଦାସୀ ଶୀତପାହାନ୍ତି ।୦।
ବାରୁଣୀଗଗନ କିରଣ ଝଲସା
ଶିଉଳି ମଳିନ ଜଳ
ସଜସକାଳର ଶିଶିରରେ ଭିଜା
ସୁନ୍ଦରୀ ଷୋଡ଼ଶୀଫୁଲ ।
ବିରହ ବଇଁଶୀ ରାଗିଣୀରେ ତୁମେ ଯୋଡ଼ା ବଇଶାଖି ତାତି ।୧।

କେତେବେଳେ ତୁମେ ଶରତ ସୀମାନ୍ତ
ଉଦାସୀ ନଦୀର ଧାର
ପୁଣି କେତେବେଳେ ବସନ୍ତ ବିରହୀ
ନବ ଯଉବନ ଭାର
ହଜିଯାଇଥିବା ଶାକୁନ୍ତଳ ମୁଦି ଯହିଁ ଭରା କେତେ ସ୍ମୃତି ।୨।

ସଜାକବରୀରେ କେତେବେଳେ ତୁମେ
ମଲ୍ଲୀମାଳ ଦରଫିଟା
ଆଉ କେତେବେଳେ କେତକୀ ପାଖୁଡ଼ା
ଧାରେଧାରେ କେତେ କଣ୍ଟା
ଖୋଜି ନ ପାଇବା ତଥାପି ଖୋଜିବା ଆଶାମଧୁକୁଞ୍ଜକାନ୍ତି ।୩।

# ଆଉ ଥରେ

ଆଉ ଥରେ କିବା ଶୁଭନ୍ତା ଜୀବନେ
କୋଇଲିର କୁହୁତାନ
କିଶଳୟ ଛୁଇଁ ବହନ୍ତା ମଳୟ
ଚହଲାଇ ତନୁ ମନ ।୦।

ଫୁଲ ପାଖୁଡ଼ାରେ ପ୍ରେମର କବିତା
ଭଅଁର ଯାଆନ୍ତା ଲେଖି
ଅରୁଣ କିରଣେ ସେ କବିତା କୁଞ୍ଜେ
ମନ ମୋ ଯାଆନ୍ତା ଲାଖି ।
ଶ୍ୟାମଳ ଶୋଭନ ଘାସର ଗାଲିଚା ମୋହନ୍ତା ମାଟିର ମନ ।୧।

ପରାଣ ନଦୀରେ ନାଚନ୍ତା କି ଧୀରେ
ଆନନ୍ଦ ଲହରୀ ମାଳା
ଅଳପ ହସରେ ମହୁଆ ବାସରେ
ଆସନ୍ତା କି ଦେବବାଳା
ନ କହି କହନ୍ତା ସିଏ କେତେ କଥା, ଭାବିଭାବି ମନଆନ ।୨।

ପାରିଜାତ ଡାଳ                    ଛୁଅଁନ୍ତା କି ଆସି
        ମରତ ମାଟିକୁ ଥରେ
ଲାବଣ୍ୟଲିପିରେ                    ଲେଖି ଯାଆନ୍ତା କି
        ନିଜ ନାମ ସୁବର୍ଣ୍ଣରେ ।
ନୂଆ ଲାଗୁଥାନ୍ତା ଯେତେ ପଢ଼ିଲେ ବି ସେ ନାଁକୁ ନିଶିଦିନ ।୩।

ଉଛୁଳି ପଡ଼ନ୍ତା                    ଆଶାର କଳସ
        ଅଳସରେ ଭରିଯାଇ
ମାଟିରୁ ଆକାଶ                    ଆକାଶରୁ ମାଟି
        ବହନ୍ତା ଆଲୋକ ନଈ ।
ଆଲୋକ ନଈର ଧାରେ ବିରଜନ୍ତା ଆଷାଢ଼ୀ କଦମ୍ବ ବନ ।୪।

ଭାସି ଆସନ୍ତା କି                    ପବନ ଦୋଳିରେ
        ଚନ୍ଦନ ବନରୁ ବାସ
ଅନେକ ତାରାର                    ରାତି ସାଜନ୍ତା କି
        ମଧୁମୟୀ ବଧୂବେଶ ?
ରେଶମୀ ଜୋଛନା ପଣତ କାନିରେ ସରୁସରୁ ଜରିକାମ ।୫।



## ଆଲୋକ ତୀର୍ଥ

ଗଭୀର ନିଶୀଥେ ଗାଉଅଛି ବସି
ଏ ପକ୍ଷୀ କାହାର ଗୀତ
ଯେତେ ଶୁଣିଲେ ବି ନୂଆ ନୂଆ ଲାଗେ
ଚିତ୍ତ ପ୍ରୀତି ପୁଲକିତ ।୦।

ଗଛ ଡାଳେଡାଳେ ପବନ ଅଟକେ
ସେ ଗୀତ ଶୁଣିବ ବୋଲି
ପତର ଧାରରେ ଗୀତ ଶୁଣିବାକୁ
ଜୋଛନା ରହିଛି ଝୁଲି
ଝରା ଶିଶିରର ଶବଦ ପିଠିରୁ ଓହ୍ଲାଇ ପଡୁଛି ଶୀତ ।୧।

ଉଦାସୀ ଦିଗନ୍ତ କାହା କଥା ଭାବି
ସତେ କେତେ ଆନମନା
ନୀରବ ଭାଷାରେ କରେ ମନେମନେ
କାହା ମୁଗ୍ଧ ବନ୍ଦାପନା
ତାରାର ଦୀପାଳି ଯାଉଅଛି ଜଳି, ଆକାଶ ଆଲୋକ ତୀର୍ଥ ।୨।

କୁନ୍ଦଫୁଲକଢ଼ି କବରୀରେ ଖୋସି
ମାଟି କି ଭାବୁଛି ବସି
ସେଇ ଭାବନାକୁ ଚହଲାଇ ଦିଏ
କିଏ ମିଠାମିଠା ହସି
ଆନନ୍ଦ ରାଇଜ ରାଜକୁମାର ସେ ଶୋଭା ତା'ର ସୁଲଳିତ ।୩।

ଘୂମନ୍ତ ପାହାଡ଼ ଚମକି ପଡୁଛି
ଏଇ ପକ୍ଷୀ ଗୀତ ଶୁଣି
ଏ ସୁରରେ ଅଛି କୁହୁକ ପରଶ
ମନ ନେଉଅଛି କିଣି
ଯେତେ ଶୁଣିଲେ ବି ନୂଆ ଲାଗୁଅଛି ମୁଖୁଡ଼ା ଅନ୍ତରା ପ୍ରାନ୍ତ ।୪।



## ଅନୁରାଗ

ତୁମ କଥା ବସି କେତେ ମୁଁ ଲେଖିଲି
କିଛି ପାରିଲିନି ଲେଖି
ତୁମ ରୂପ ଛବି କେତେ ମୁଁ ଆଙ୍କିଲି
କିଛି ପାରିଲିନି ଆଙ୍କି ।୦।

କଳାଭଅଁରକୁ ପଚାରିଲି ଦିନେ
କି ଗୀତ ଗାଉ ତୁ ବସି
କିଛି ନ କହି ସେ ଆନମନା ହୋଇ
ଦେଲା ଖାଲି ଟିକେ ହସି ।
ସେଇ ହସଥିଲା କହି ନ କହିବା, ନ କହି କହିବା ସାକ୍ଷୀ ।୧।

ପଚାରିଲି ଦିନେ ଗିରି ଝରଣାକୁ
ଏତେ ନାଚୁ କାହା ପାଇଁ
ଦୂରେ ବହୁଦୂରେ ସୁନୀଳ ସାଗର
ରହିଛି କି ତତେ ଚାହିଁ ?
କିଛି ନ କହି ସେ ନୀରବ ରହିଲା, ଆଖିରେ ସରମ ମାଖି ।୨।

ପବନ ଦୋଳିରେ ଝୁଲୁଥିଲା ବସି
ସକାଳର ସଜଫୁଲ
କାହା ଲାଗି ଏତେ ସୁମଧୁର ହସ
କିଏ ଦେବ ତା'ର ମୂଲ ।
ନୀରବ ଭାଷାରେ କହି ଦେଲା ମତେ କେତେ କଥା ମନ ଲାଖି ।୩।

ପଚାରିଲି ଦିନେ ଶିଶିର ବିନ୍ଦୁକୁ
କାହା ପାଇଁ ଯାଉ ଝରି
ଗୋଟାଇ ନେବାକୁ କିଏ ବସିଛି କି
ଯତନେ ପଣତ ପାରି ।.
ଯାହା ସେ କହିଲା ସବୁ ବୁଝିହେଲା, ହବ ନାହିଁ କିଛି ଲେଖି ।୪।

ସକାଳ ପକ୍ଷୀକୁ ପଚାରିଲି ଦିନେ
କାହାପାଇଁ ଗାଉ ଗୀତ
ଆସୁଛନ୍ତି କିବା ଦୂର ରାଇଜରୁ
ସତେ କି ତୋ ପ୍ରାଣମିତ !
ଚାହାଣିରେ ତା'ର ଫୁଟିଫୁଟି ଗଲା ଫୁଲ କଢ଼ି ପେନ୍ଥିପେନ୍ଥି ।୫।



# ଅନୁଭାବନା

ଶୁଣିଛ କି କେବେ ନୀରବରେ ବସି
ବନ ଝରଣାର ଗାନ
ଦେଖିଛ କି କେବେ ଏକାଏକା ବସି
ନିଶୀଥ ପୂର୍ଣ୍ଣିମା ଜହ୍ନ ।୦।

ସାଗର ବେଳାରେ ବସି ନିରୋଳାରେ
ହସିଛ କି ମନେମନେ
ଶରତ ମେଘର ଝୁଲଣାରେ ବସି
ଝୁଲିଛ କି କେବେ ଦିନେ ।
କାହା ବାଟ ଚାହିଁ ବସିଛ କି କେବେ ସକାଳରୁ ଅପରାହ୍ନ ।୧।

ଦୂର ପାଟବିଲ ଝିଁ ଝିଁ ସ୍ୱନ
ଆଣିଛି କି ଭାବାନ୍ତର
ଦୂର ଦିଗନ୍ତରୁ ଶୁଭିଛିକି କେବେ
ରାଗ ଆଶାବରୀ ସୁର ।
ପାଚିଲା ପତରେ ପଢ଼ିଛ କି କେବେ ବ୍ୟଥାର କରୁଣ ଗାନ ।୨।

ଟିକି ଟିକି କଢ଼ି ଫୁଟି ଯାଇଛି କି
ଝିରିଝିରି ଫୁଲ ହୋଇ
ମିଠାମିଠା ବାସେ ଭରି ଯାଇଛି କି
ମନ ନିଧୂବନ ଭୂଇଁ ।
ମଳୟ ମିଳନେ କୋଇଲିର କୁହୁ କରିଛି କି ମନଆନ ।୩।

ଫାଟି ଆସୁଥିବା ସିନ୍ଦୂରା ଭିତରେ
ଦେଖିଛ କି ନବାରୁଣ
ହତାଶା ଭିତରେ ଆଶା ଆଲୋକରେ
କରିଛ କି କେବେ ସ୍ନାନ ।
ଭିଜି ଯାଇଛି କି କେବେ ଦୁଇ ଆଖି କରି ପ୍ରିୟ ଦରଶନ ।୪।



## ତୁମେ ହିଁ ତୁମେ

ତୁମେ ଦେବଦାରୁ ଛାୟା ଶୀତଳତା
ତୁମେ ନୀଳ ବୀଚିମାଳା ଚଞ୍ଚଳତା
ତୁମେ ମାଧବମୋହିନୀ ମାଦକତା
ତୁମେ ପ୍ରଣୟ ଲଳିତ କୋମଳତା ।୧।

ତୁମେ ଭକ୍ତଜନ ପ୍ରାଣ ବ୍ୟାକୁଳତା
ତୁମେ ବସନ୍ତ ବିଳାସୀ ମଧୁରତା
ତୁମେ ପ୍ରଣୟିନୀ ଭାବ ବିଭୋରତା
ତୁମେ ନୀଳ ପାରାବାର ବିଶାଳତା ।୨।

ତୁମେ ଶ୍ରାବଣୀ ମେଘର ଗମ୍ଭୀରତା
ତୁମେ ପ୍ରଶାନ୍ତ ସାଗର ଗଭୀରତା
ତୁମେ ପାହାନ୍ତି କଢ଼ିର ଅଧୀରତା
ତୁମେ ଶିଶୁ ମୃଦୁହସ ସରଳତା ।୩।

ତୁମେ ଘରବାହୁଡ଼ାର ହରଷତା
ତୁମେ ଶୋଷିଲା ପ୍ରାଣର ଆତୁରତା
ତୁମେ ପରାଜିତ ମନ ବିରସତା
ତୁମେ ଅଳସ ପାଦର ଶିଥିଳତା ।୪।

ତୁମେ ମିଠା ମିଠା ସ୍ମୃତି ସରସତା
ତୁମେ ବିଜନ ବେଳାର ନୀରବତା
ତୁମେ କବି ମନ ସ୍ୱର୍ଣ୍ଣକାତରତା
ତୁମେ ମାତୃ ଚେତନାର ଜୟଗାଥା ।୫।

# ଅଭିଷେକ

ହୀରାଫୁଲ ଫୁଟା ଭରା ଜହ୍ନରାତି
ପାଦରେ ଅଳସୀ ଚାଲି
ମହୁଆ ଅତର ମାଖି ଏ ପବନ
ଆନମନା ଝୁଲିଝୁଲି ।୦।

ରସିକପଣର ଝରା ସୁବାସରେ
ବନଭୂମି ତନୁ ବାସେ
ରେଣୁରେଣୁ ସେଇ ଜୋଛନା ଝରାରେ
ଅତଣ୍ଡୀଲତା କି ଖସେ
ନୂଆ ଦିନଟିଏ ସତେ କି ଆସୁଛି ପାଖୁଡ଼ା ପାଖୁଡ଼ା ମେଲି ।୧।

ରୁପା ଚାଦରର ବେଢ଼ଣରେ କିବା
ଶୋଭା ତାରକସୀ କାମ
କାହା ଆଗମନ ପାଇଁ ସତେ ଅବା
ଏତେ ସବୁ ଆୟୋଜନ
ସାରା ଆକାଶର ତାରା ଉଜାଗର ନୀରବେ ଜାଗର ଜାଳି ।୨।

ନୀଳ ସାଗରର ଲହରୀ ଦୋଳିରେ
ଆକାଶ କି ଆସେ ଖସି
ଶୁଭ କାମନାର ବାରତା ଦିଅନ୍ତି
ସୁରବାଳା ହସିହସି
ପାହିଯିବ ରହତି ଆସିବ ପାହାନ୍ତି ଅମୃତ କଳସ ଧରି ।୩।

ନୂଆ ଚେତନାର ଲଳିତ ଝଙ୍କାରେ
ଭରାମନ ନିରନ୍ତର
ମାନବଜୀବନ ହୋଇବ ସେଦିନ
ସୁମନ ସୁନ୍ଦର ହାର
ଅଭିନନ୍ଦନିକା ଆମେ ତ ଗାଇବା ନୂଆ ଛନ୍ଦେ ମନଖୋଲି ।୪।



## ଜହ୍ନରାତି

ଏ ରାତିରେ ବୁଣିଦେଲା କିଏ ଏତେ ଜୋଛନା
ଜୋଛନାରେ ତାରକସୀ ମନଲୋଭା ରଚନା ।୦।

ମାଟିଯାଏ ପ୍ରେମେ ଭିଜି
ନିଜକୁ ପାଏନା ଖୋଜି
କାହାସ୍ମୃତି ବୀଣାସୁରେ ଚିହ୍ନା ଲାଗେ ଅଚିହ୍ନା ।୧।

କଇଁଫୁଲ ଖେଳେ ଦୋଳି
ସରସୀରେ ଝୁଲିଝୁଲି
ନିଜ ରୂପ ନିଜେ ଦେଖେ ନୀଳଜଳ ଆଇନା ।୨।

ବନାନୀ ଚହଲିଯାଏ
କୁହୁକ କି ତାକୁ ଛୁଏଁ !
ତା'ପାଦେ କେ ଆଙ୍କିଦିଏ ଚିତ୍ରଛାୟା ଆଲ୍ପନା ।୩।

କାନନ କୁସୁମ ରାଜି
ଭୁରୁଭୁରୁ ବାସେ ଆଜି
ପଥିକର ମନେ କରେ ଭାବାନ୍ତର ରଚନା ।୪।



# ଅପେକ୍ଷାର ଭାଗଶେଷ

ଦୂର ଆକାଶର ଚାନ୍ଦ ଆଇନାରେ
ତୁମ ମୁହଁ ମତେ ଦିଶେ
ରାଗ ଆଶାବରୀ ଧ୍ୱନିମାଳା ଶୁଭେ
ଅଦୂର ଗଗନ ଦେଶେ ।୦।

ଘୁମାଏ ଶାମୁକା ବିଜନ ବେଳାରେ
କାହା ବାଟ ଚାହିଁଚାହିଁ
ଅଳସୀ ମନର ଆଖି ପରଦାରେ
ପଡ଼ିଯାଏ କାହା ଛାଇ
ସେ ବାଟ ତୁମର ସେ ଛାଇ ତୁମର, ଅପେକ୍ଷାର ଭାଗଶେଷେ ।୧।

କୁଞ୍ଜ କିଶଳୟ ଗବାକ୍ଷରେ ଜଳେ
ମାଣିକର ନୂଆ ଦୀପ
ପବନ ଛନ୍ଦର ଅନୁବନ୍ଧେ ବାଜେ
ଭରସାର ଶୁଭଶଙ୍ଖ
ଅବସୋସ ଆଉ ଶୋଷର ମଝିରେ ରେଶମୀ ରାତିକି ବାସେ ?।୨।

ମଧୁ ଜୋଛନାର ପରଶରେ ହସେ
ଚୂନା ଚୂନା ଘାସ ଫୁଲ
ମାଟିର ପରଶେ ମିଠାମିଠା ହସେ
ହସ ତା' ଅମୂଲ ମୂଲ
ନମନୀୟତାର ମହାଭାବେ ତା'ର, ମନ ମହମହ ବାସେ ।୩।

## ଶରତ ଆସିଛି

ଶ୍ରାବଣୀ ମେଘର ଘୋର ଘଡ଼ଘଡ଼ି
ତା ସାଥିରେ ପୁଣି ବିଜୁଳି ତାତି
ଶରତ ଆସିଛି ଆଉଁସି ଦେବାକୁ
ଫାଟି ଯାଇଥିବା ଆକାଶ ଛାତି ।୦।

ଘଡ଼ଘଡ଼ି ନାଦେ ମାଟି ଚମକିଛି
ହଜିଯାଇଛି ତା' ଆଖିରୁ ନିଦ
ଶୀତଳ ଅସରା ଧାରେ ଧାରେ ଭିଜି
ଥରି ଯାଇଛି ତା ପରାଣ ଛନ୍ଦ
ଶରତ ଆସିଛି ଲିଭାଇ ଦେବାକୁ ମରତ ମାଟିର ଅନେକ କ୍ଲାନ୍ତି ।୨।

ବଢ଼ିଲା ରାତିର ଉପହାର ଆଣି
ଆସିଛି ଶରତ ମରତେ ଝୁଲି
ରାତିର ଅବଧି ବଢ଼ି ଯାଇ ଅଛି
ମାଟି ଟିକେ ନିଦ ଶୋଇବ ବୋଲି
କାଶତଣ୍ଡୀ ଡାଳେ ଆଲଟ ଚାମର ନତମଥା ହୋଇ ଦିବସରାତି ।୩।

ମାଆ ଦଶଭୁଜା ଦେବୀ ମନୋରମା
କଇଁଫୁଲେଫୁଲେ ପାଦକୁ ଥାପି
ଆସିଛନ୍ତି ଏଇ ମରତେ ଓହ୍ଲାଇ
ନାଶିବେ ଅସୁର ତୋଷିବେ ତପୀ
କରୁଣାରେ ତାଙ୍କ ଝଲସି ଉଠୁଛି ଚଉଦିଗ ବହି ଅମର କାନ୍ତି ।୪।

ନଦୀ ସାଜିଅଛି ଆଜି ଦରପଣ
ମାଆ ତାଙ୍କ ମୁହଁ ଦେଖିବେ ବୋଲି
ସବୁଜ ବନାନୀ ପଣତ ସାଜିଛି
ମାଆ ତାଙ୍କ ମୁହଁ ପୋଛିବେ ବୋଲି
ଗଙ୍ଗଶିଉଳିର ମିଠା ମିଠା ବାସ ଗାଉଅଛି ମାଆ ମହିମାଗୀତି ।୫।



## କାଶତଣ୍ଡୀ

ମୁଁ ତ କାଶତଣ୍ଡୀ ଫୁଲଟିଏ
ଶରତ ଆକାଶ ସାମିଆନାତଳେ
ଝୁଲି ଝୁଲି ଗୀତ ଗାଏ ।୦।

ମହୁଆ ପବନ କାହିଁ ଦୂରୁଆସି
ମତେ ଦିଏ ଛୁଇଁ ମିଠାମିଠା ହସି
ଲାଜରେ ଭିଜି ମୁଁ ପବନକୁ କହେ 'ସତେ ତୁମେ ବଡ଼ ଇଏ' ।୧।

ଏ ମରତ ମାଟି ପୂଜା ମୋର ଧ୍ୟାନ
ତା'ର ପ୍ରେମଗାନେ ମୋ ମନ ମଗନ
ନୀଳପରୀ ଦେଶ ବିଳାସୀ ନୁହେଁ ମୁଁ, ମରତକୁ ଭଲ ପାଏ ।୨।

ମାଟିର ଚରଣେ ଆଭୂମ ପ୍ରଣାମ
ଢାଳିବାରେ ହୁଏ ମୋ ଜୀବନ ଧନ୍ୟ
ଏଇ ମାଟି ମୋର ସରଗରୁ ବଡ଼ ତା'ର ଯଶ ମୁହିଁ ଗାଏ ।୩।

ଆଜୀବନ ମୁହିଁ ବିଜନ ବିଳାସୀ
ନିଜେ ହୋଇ ଖୁସି ଆନେକରେ ଖୁସି
ସରବେ ରହନ୍ତୁ ସୁଖରେ ଶାନ୍ତିରେ, ଏଇ ଇଛା ମୋର ଥାଏ ।୪।



# ମଧୁ ଜ୍ୟୋସ୍ନା

ଲାଜଲାଜ ଜୋଛନାରେ ଭିଜାକେତେ ସପନ
ହଜିଯାଏ ମନ ଆଜି ହୋଇ ପ୍ରୀତି ମଗନ
ଚାହିଁ ଚାହିଁ ସେହି ମଧୁ ଲଗନ ।୦।

ଚହଲା ବନଲତାରେ
ଆକାଶର ନୀଳିମା ଝରଇ
ଜହ୍ନର ମଧୁର ହସେ
ଝୁରାମନ ଆହୁରି ଝୁରଇ ।
ଧୂଆ ପରି ଦିଗଦିଶେ, କିଏ ମିଠା ମିଠା ହସେ
ଭରି ଦିଏ ଦେହେ ଶିହରଣ ।୧।

ତଟିନୀର ଧାରେଧାରେ
ଧୀରଧୀର ଶୀତଳ ପବନ
ଛୁଇଁଯାଏ କେଦାରର
ସବୁଜିମା ଜଗାଇ କମ୍ପନ ।
କଳ୍ପନାର କୁଞ୍ଜବନେ ଚହଲା ସୁଷମାରଚେ
ଅନୁପମ ଲହରୀ ପ୍ଲାବନ ।୨।
ଫଗୁକେତେ ଝରିଯାଏ
ବାଟେଘାଟେ ଧୂସର ବୀଥିରେ
ମରମକୁ ଛୁଇଁଯାଏ
କିଏ ସିଏ ଅବୁଝା ଗୀତିରେ
ମଳୟର ପରଶରେ ମନ ଚିରହରଷରେ
ଆଣୁଥାଏ ଶତ ଶିହରଣ ।୩।

# ତୁମେ ତ ଆସିଲ ନାହିଁ

ଆସିବ ଆସିବ କହି କହି ତୁମେ
କାହିଁ ତ ଆସିଲ ନାହିଁ ।
ସକାଳରୁ ସଞ୍ଜ, ସଞ୍ଜରୁ ସକାଳ
ବେଳଗଲା ବାଟଚାହିଁ ।୦।

ସକାଳକୁ ମାଗିଥିଲି ଦେବ ବୋଲି
ତୁମ ପାଇଁ ନୀଳ କଇଁ
ବନ ମଇନାକୁ ଗୀତ ଗାଇବାକୁ
ଆଗରୁ ଥିଲି ମୁଁ କହି
ଶୁଭିଲା ତୁମର ପାଦର ଶବଦ, ଚାହିଁଲା ବେଳକୁ ନାହିଁ ।୧।

ଦେବଦାରୁକୁ କେତେ ମାଗିଥିଲି
ଖରାବେଳେ ଦେବ ଛାଇ
ପବନକୁ କହିଥିଲି ବହିବାକୁ
ପଦ୍ମପୋଖରୀକୁ ଛୁଇଁ ।
ଲାଗୁଥିଲା ମତେ ତୁମେ ତ ଆସିଲ, ଚାହିଁଲାବେଳକୁ ନାହିଁ ।୨।

ଫୁଟିବ ବୋଲି ମୁଁ ଚାହିଁ ବସିଥିଲି
ସଞ୍ଜବେଳେ ହେନା ମଲ୍ଲି
ଫୁଲର ବାସରେ ଭାବିଲି ତୁମକୁ
ପାଛୋଟି ଆଣିବି ବୋଲି
ଭାବୁଥିଲି ସତେ ଏଇ ତ ଆସିଲ ଚାହିଁଲାବେଳକୁ ନାହିଁ ।୩।



## ବରଷାଗୀତି

ଆକାଶରେ କଳାମେଘ ଦୂରୁଭାସି ଆସେ
ପରିବେଶ ମହକିତ କଦମ୍ବ ସୁବାସେ ।୦।

ମାଳତୀଲତାରେ ଫୁଟେ କେତେଫୁଲକଢ଼ି
ମଲ୍ଲୀଫୁଲ ସାଜେନାହିଁ ମାଟିର କବରୀ
ଶୁଭେନା କୋଇଲି ସୁର ବନଲତା ଦେଶେ । ।୧।

ମେଘ ଦରଶନେ ଛନ୍ଦେ ନାଚଇ ମୟୂର
ନାଚେ ନାୟିକାର ମନ ମିଳନେ ଅଧିର
ଘନଘନ ଶିହରଣ ସୁନା ଦେହେ ଆସେ ।୨।

ଧରାବୁକେ ଶୀତଳତା ଶାନ୍ତ ପରିବେଶ
ପ୍ରାଣୀ ଜଗତରେ ଆଣେ ଅଶେଷ ହରଷ
ଗହଳ ସେ ଜଳ ରାଶି ପଦ୍ମବନ ନାଶେ ।୩।

କେଦାରେ କେଦାରେ ରାଜେଘନ ସବୁଜିମା
ପାହାଡ଼େ ପାହାଡ଼େ ସାଜେ ଶୋଭନ ନୀଳିମା
ସବୁ ମଧୁମୟ ସତେ ବରଷା ପରଶେ ।୪।



# ନଦୀ

ଅନେକଘାଟରେ ଦେଖୁଛି ନିତି ମୁଁ
ବହୁଛି ଏକଇ ନଦୀ
ଅନେକରେ ଏକ ଏକେ କି ଅନେକ
ପାରୁନାହିଁ ମୁହିଁ ଭାବି ।୦।
ଗୋଟିଏ ଘାଟରେ ଖୁଦୁରୁ କୁଣିର
ଫୁଲଭାସେ ଝୁଲି ଝୁଲି
ଅପର ଘାଟରେ ଆଉ କାହା ପାଦ
ଅଳତାରେ ପାଣି ନାଲି ।
ପୁଣି କେଉଁ ତୁଠେ ନାଲି ଚୂଡ଼ି କେତେ ଖରାବେଳେ ଯାଏ ଭାଙ୍ଗି ।୧।

ମାଛ ଧରା ଜାଲ ପଡ଼ିଛି କେଉଁଠି
ଜାଲରେ ପଡ଼ିଛି ମାଛ
ମାଛ ପାଇଁ ଜାଲ, ଜାଲ ପାଇଁ ମାଛ
କିଏ ସତ କିଏ ମିଛ ?
ଭାବୁଭାବୁ ଏହା ପଣତ କାନିରୁ ହଜିଯାଏ ସୁନାମୁଦି ।୨।

ଛାୟା ଦରପଣ ଚନ୍ଦ୍ରମା ଶୋଭନ
ଦିଶେ କେଡ଼େ ଝଲମଲ
ଲହରୀ ବେଣୀରେ ଲଳିତ ଜୋଛନା
ଭାସି ଦିଶେ ମଖମଲ
ନଦୀଧାରେଧାରେ ଆଗକୁ ଚାଲିଲେ ଦୂରେ ଡାକେ ମହୋଦଧି ।୩।

# ତାକୁ ମୁଁ ଭେଟିବି

ଦୂର ଦିଗନ୍ତର ଯାତ୍ରୀଟିଏ ମୁଁ
ସୀମାହୀନ ମୋର ପଥ
ନଈର ପାଣିରେ ଗଛ ଛାଇ ନାଚେ
ନୁହେଁ ମିଛ ନୁହେଁ ସତ ।୦।
ପକ୍ଷୀ ପରଟିଏ ଆସି କେଉଁଠାରୁ
ନଦୀ ଜଳେ ଯାଏ ଲେଖି
ଏକା ଚାଲିବାରେ ଉଦାସ କାହିଁକି
ନିଜେ ପରା ନିଜ ସାଥୀ
ଏ ଭସାବାଦଲ ହସି ହସି ଗାଏ ନିଜ ସୁରେ ନିଜ ଗୀତ ।୧।

ଦୂରେ ଦୂରେ ଦିଶେ ବିଜନ ବିଳାସୀ
କାଶତଣ୍ଡୀ ରୂପରେଖା
ପବନହାତରେ ଦିଏ ସେ ବାରତା
ଚାଲିବାକୁ ଏକା ଏକା
ବାରୁଣୀ କିରଣ ଶୁଣାଏ ମୋ କାନେ ଆଗାମୀ କାଲିର ଗୀତ ।୨।

ଅପରାଜିତାର ନୀଳ ରଙ୍ଗଚୋର
ଦୂର ପରବତ ଧାରେ
ଆକାଶରୁ କିଏ ଓହ୍ଲାଇ ଆସୁଛି
ମରତ ମାଟିକୁ ଧୀରେ ।
ତାକୁ ମୁଁ ଭେଟିବି ଏଇ ମରତରେ ହେବ ଚିତ୍ତ ପୁଲକିତ ।୩।

## ଘାଟ ମୁକୁଳାନାଆ

ଗୋଧୂଳି ଗଗନ ଧାରେ ଧାରେ ମୁଁ ଯେ
ଧଳାମେଘ ଗାରେ ହେବି
ନୀଡ଼ ଫେରାପକ୍ଷୀ ଖୁସିର ସଂଗୀତ
ଭାସି ଭାସି ଶୁଣୁଥିବି । ।୦।
ସପନ କେମିତି ଯାଏ ସ୍ମୃତି ହୋଇ
ସତ ମିଛ ମିଶାମିଶି
ବାଛିଲାବେଳକୁ କିଏ କମିଯାଏ
କିଏ ହୋଇଯାଏ ବେଶି ।
ସୀମାରେଖାଟିଏ ଆଙ୍କି ହୁଏ ନାହିଁ, ଆଙ୍କି ହୁଏନା ତା' ଛବି ।୧।

ସ୍ମୃତିମାନେ ମିଶି ଆଶାର ସୂତାରେ
ସୁକୁମାର ଫୁଲମାଳ
ଫୁଲ ମଉଳିଲେ ସୂତା ମଉଳେନା
ଅମଉଳା ଚିରକାଳ ।
କଳପନା ଜାଲେ ପଡ଼େ ନାହିଁ ଧରା, ଆଗାମୀ କାଲିର ଛବି ।୨।

ଘାଟରୁ ମୁକୁଳି ଭଉଁରୀ କାଟୁଛି
ଆରଘାଟେ ଯିବ ନାଆ
ସଅଳ ସଅଳ ଲାଗିବ ଘାଟରେ
ଲାଗି ଅନୁକୂଳ ବାଆ
ଆରଘାଟେ ଥିବ ଖାଲି ଅଭିଜ୍ଞତା ସ୍ମୃତି ଯିବ ଧୀରେ ଲିଭି ।



## ତୁମକୁ ଦେଇଛି ଧରା

ଦୂର ଆକାଶର ମଇନା ଟିଏ ମୁଁ
ତୁମକୁ ଦେଇଛି ଧରା
ମତେ ଭଲ ଲାଗେ ତୁମରି ଆଦର
ତୁମରି ବରଷାଖରା ।୦।
ଉଡି ଉଡି ଆସି ତୁମରି ଉପରେ
ଦେଖ ମୁଁ ଯାଇଛି ବସି
ସବୁଜ ସୁଷମ ବନ ଭୂଇଁ ଛୁଇଁ
ପବନ ବଜାଏ ବଂଶୀ
ଶୁଣି ସେଇ ତାନ ମଧୁର ମୋହନ ପ୍ରେମେ ମୁହିଁ ଆତ୍ମହରା ।୧।

ସୁରବାଳା ଚାରୁ ପଣତର କାନି
ଛାଡ଼ି ମୁଁ ଆସିଛିପରା
ହେ ମରତ ମାଟି ! ନିଅ ମୋ ପ୍ରଣତି
ସର୍ବଂସହା ବସୁନ୍ଧରା,
ଦିଅ ଶୁଭାଶିଷ ତୁଟୁ ମୋ କଲୁଷ, ଝରୁ ଅମୃତର ଧାରା ।୨।

ଅନ୍ଧାରେ ଆଲୋକ, ଆଲୋକେ ଅନ୍ଧାର
ଛାଇ ଆଲୁଅର ଖେଳ
ଛାଇରୁ ଆଲୋକ, ଆଲୋକରୁ ଛାଇ
କହିବ କି କେତେ ଦୂର ?
ସେଇ ଦୂରତାକୁ ମାଗୁଛି ମୁଁ ବସି ଏଇ ମୋ ଜୀବନ ସାରା ।୩।



# କେଳି କୁସୁମ

ତନ୍ଦ୍ରାଭରା ଏ ଲାଜୁଆ ସକାଳ
ଖୋଷାରେ ମଉଳାଫୁଲ
ଝରାପତରର ଝୁଣ୍ଟିଆରେ ବାଜେ
ସ୍ମୃତି ଭିଜା ଗୀତି ସୁର ।

ଫେନିଳ ଲହରୀ ବେଳା ଛୁଇଁ ଭାସେ
ଖୋଜିବାର ନିଶା ପାଇବାରେ ମିଶେ
ମହୁଆ ଭାବରେ ମନ ମହକାଇ ଶୁଭୁଥାଏ ଅଳି ସୁର ।୧।
ସାଉଁଟା ପଣତ ପୁଣିଯାଏ ଲୋଟି
ଆନ ମନା ହୋଇ ଚାଲୁଚାଲୁ ଝୁଣ୍ଟି
କାହାମିଠା ହସ ସାଜେ ମଧୁମାସ, ବୀଣାତାରେ ସାତସୁର ।୨।

ଭାବନା ବିଳାସ ମନ କଳସରେ
ଭରିଦିଏ କିଏ ଭଙ୍ଗା ଅଳସରେ
ଭାରି ଭଲଲାଗେ ଶୁଣିବା ପାଇଁ କି ତା କଥା ଅମୀୟ ଝରା ।୩।

ସେହିକଥା ଦିଏ ମନେ ଭରି ଆଶା
ନୂଆ ଜୀବନର ନୂଆ ନୂଆ ଭାଷା
ଆଗକୁ ଯିବାକୁ କହେ ହସି ସିଏ, ହୋଇ ଅତି ଆପଣାର [illegible]



# ଅରୁଣିମା

କାନନିକା ପାଟ ପଣତ କାନିରୁ
ଝରେ ପୁରୁଣା ପତର
ଭରିଯାଏ ମନେ କେତେ ଭାବାନ୍ତର
ଅଧୀର ଅଧର ତଳ ।୦।

କିଏ ଆସିକାନେ ଗାଏ ନୂଆ ଗୀତ
ଗୁଣୁ ଗୁଣୁ ମିଠାସୁରେ
ଦୂର ଆକାଶର ଅସୀମତା ନାଚେ
ନଦୀ ଜଳ ଆଇନାରେ
ନବ କିଶଳୟ ଲଳିତ ବଳୟ ଦରହସା ମନଚୋର ।୧।

କାହା ଧୀରଧୀର ପାଦର ଶବଦ
ପୂର୍ଣ୍ଣକରେ ମନଭୂମି
ସିଏ କି ଆସୁଛି ଅଳକା ପୁରୀରୁ
ସରଗ ସମ୍ପଦ ଆଣି
ଦେବ ତରଙ୍ଗିଣୀ ତଟରୁ ସେ କିବା ଆଣୁଛି ବାସ-ସମୀର ।୨।

କଳପନା ତା'ର ଲାଗେ ଏତେ ଭଲ
ପୁଲକିତ ମନ ବୀଥି
ଲୋଟୁଥାଏ ମନ ସୁନାର ଫସଲେ
ଅବରତ ଦିବାରାତି
ସପନ ହୋଇବ ସତସେଇ ଦିନ
ଅନ୍ତ ହେବ ଅପେକ୍ଷାର ।୩।

# ଅଭିମାନ

ଶୀତ ପରେପରେ ବସନ୍ତ ଆସିବ
ଏ କଥା ବୁଝେନି ମନ
ବୁଝୁଥାନ୍ତା ଯେବେ ଏଇ କଥା ଟିକ
କରନ୍ତା କି ଅଭିମାନ ।୦।

ଝଡ଼ିପଡ଼େ ପରା ପାଦପ ପତର
ନବ କିଶଳୟ ପାଇଁ
ମନ କିନ୍ତୁ କହେ ଝଡ଼ିଲେ ପତର
ଆଉ ତ ଆସିବ ନାହିଁ ।
ପ୍ରତିଟି ଗୋଧୂଳି କହି ଦେଇଯାଏ ପ୍ରଭାତର ଆଗମନ । ।୧।

ଝଡ଼ ବତାସରେ ଗଭୀରନିଶୀଥେ
ଭାଙ୍ଗେ କେତେ ଗଛ ଡାଳ
ମନ କହେ ଆହା ସବୁ ତ ସରିଲା
ଆସିଲା ବିନାଶ ବେଳ ।
ଆସେ କିଶଳୟ ଶୋଭନବଳୟ ଦରହସା ଯଉବନ ।୨।

ବହୁଥାଏ ନଈ ଆଗକୁ ଆଗକୁ
ନୂଆ ନୂଆ ପାଣି ନେଇ
ତୁଠ ପଥରର କାନେ କହିଯାଏ
ହତାଶ ହୁଅନା ଭାଇ
ଆଶା ହିଁ ଜୀବନ, ଆଶା ବଡ଼ ଧନ, କେହି ନୁହେଁ ତା ସମାନ ।୩।

# ବଉଦ ଡ଼ଙ୍ଗା

ଧଳା ବଉଦର ଡ଼ଙ୍ଗାରେ ଆସିଲ
ମତେ ତ କହିଲ ନାହିଁ ।
ଜାଣିଥିଲେ ମୁଁ ତ ଯାଇଥାନ୍ତି ଚାଲି
ପାଛୋଟି ଆଣିବା ପାଇଁ ।୦।

ମୁଁ ଜାଣିଛି ତୁମେ ଗୋପନେ ଗୋପନେ
ଆସିବାକୁ ଭଲ ପାଅ
ଅଳପଅଳପ ହସିଲା ମୁହଁରେ
ନ ଜାଣିଲା ପରି ଚାହଁ
ତୁମ ସେଇ ମୁହଁ ଉପମା ଦେବାକୁ ଫୁଟିଲାଣି ଦେଖ କଇଁ ।୧।

ଗଙ୍ଗଶିଉଳିର ମିଠା ମିଠା ବାସ
ପବନେ ଯାଇଛି ମିଶି
ଚରଣେ ଜଣାଏ ଆଭୂମ ପ୍ରଣାମ
କାଶତଣ୍ଡୀ ହସିହସି
ଶିଶିର ଗାଧୁଆ ଅପରାଜିତା ସେ ହସେ ଦେଖ ତୁମ ପାଇଁ ।୨।

ନୀଳ ନିରିମଳ ଆକାଶରୁ ଝରେ
ଚନ୍ଦନ ଜୋଛନା ରାଶି
ସେଇ ଜୋଛନାରେ ଦିଗନ୍ତରୁ ଆସେ
ମିଠା ଗୀତ ଭାସି ଭାସି
ସେ ଗୀତର ଭାବ, ମଧୁ ଅନୁଭବ, କହିବାକୁ ଭାଷା ନାହିଁ । ।୩।

# ନୂତନ ଉଷା

ନୂତନ ଉଷାରେ ନବ ଚେତନାର
କନକ କିରଣ ପଡ଼ିବ ଝରି
ସେଇ କିରଣରେ ଝଲସି ହସିବ
ଗଗନ ପବନ ପାହାଡ଼ ଦରୀ ।୦।

ଅବଚେତନାର ଘନ ଅନ୍ଧକାର
ସେ ଶୁଭ ଲଗନେ ହୋଇଯିବ ଦୂର
ମନ ମଧୁବନ କୁସୁମ ବିତାନ
ପିକ କୁହୁତାନେ ଉଠିବ ପୂରି ।୧।

ପରାଣ କୁଞ୍ଜରେ ପୁଲକ ମଳୟ
ସରଜିବ ଚାରୁ ଲଳିତ ବଳୟ
ଅବନୀ ମୋହନା ମନ ଉଦ୍ଦୀପନା
ଜୀବନରୁ ବାଧା ନେବଟି ହରି ।୨।

ଆସିବ ଦେହରେ ଲାବଣ୍ୟ ଜୁଆର
ଦିଶିବ ଶରୀର ଶୋଭନ ସୁନ୍ଦର
ଜରାମରଣର ହିମଶୀତଳତା
ଜୀବନରୁ ଯିବ ଦୂରକୁ ଚାଲି ।୩।



## ବାସନ୍ତୀ ଗୀତି

ବସନ୍ତ ଆସିଛି ଆଜି
ସାତ ଦରିଆର ସେପାରୁ ଆସିଛି
ଚାରୁତାରେ ମନ ମାଜି ।୦।

ଦିଗେଦିଗେ ରାଜେ ମଳୟ ବିଳାସ
ଆଶାର ମୁକୁଳ ଶୁଭ ଅଭିଳାଷ
ବକୁଳ କାମିନୀ କୁଞ୍ଜେ ଶୁଭୁଛି ଅଳିର ଆଳାପ ରାଜି ।୧।

ନୀଳପରୀ ଦେଶ ଆସିଛି କି ନଇଁ
ଅଟକି ଯାଇଛି ଆନମନା ହୋଇ
ବାଟ ଭୁଲା ହୋଇ ଯାଇଛି କି ରହି ମରତ ପ୍ରୀତିରେ ଭିଜି ।୩।

ମନ ମତାଣିଆ ମଧୁ ମାଦକତା
ଗଗନେ ପବନେ ରହିଛି ସାଇତା
କାହାର କାଉଁରି ପରଶରେ ସତେ ସବୁ ଏତେ ମିଠା ଆଳି ।୪।



## ଚିତ୍ରଛାୟା

ସ୍ମୃତି ତୁମେ କେତେ ଚହଲା ଛାଇର
ଜ୍ୟାମିତିକ ରଙ୍ଗ ରେଖା
କେତେ ବେଦନାର ତୁଠ ପଥରରେ
ତୁମ ନାମ ଅଛି ଲେଖା ।୦।

ଆପଣାପଣର ନୀଳ ଜହ୍ନ ତୁମେ
ବାସନ୍ତୀ ବେଳାର ମଧୁକ୍ଷରା ଯାମେ
ଘନବିଶ୍ୱାସର ପୂର୍ଣ୍ଣ ମଧୁକୋଷ ଯଉବନ ଚିତ୍ରଲେଖା ।୧।

ଚିତ୍ରଛାୟା ତୁମେ ଗୋଧୂଳି ଲଗନେ
ମେରୁଜ୍ୟୋତି ନୀଳନିଶୀଥଗଗନେ
ନବଚେତନାର ନାନ୍ଦୀ ମୁଖ ତୁମେ, ସୁବାସ ସେନେହ ମଖା ।୨।

ଭରା ଭାରଭାର ବଉଳର ବାସ
ତୁମେ ମନ୍ଦମନ୍ଦ ସୁଲଳିତ ହାସ
ପ୍ରଣୟ କାବ୍ୟର ଅଳଙ୍କାରେ ତୁମେ ଉପମାର ଝରାଝୁମ୍ପା ।୩।



## ଶାରଦ ଜୋଛନା

ସରଗରୁ ଝରି ଆସେ ଛଣା ସୁଧା ଝରଣା
ମରତରେ ଯାଏ ବହି ହୋଇ ଚାରୁଜୋଛନା ।୦।

କାଶତଣ୍ଡୀ ଫୁଲେଫୁଲେ ଝୁଲେ ସେହି ଜୋଛନା
କଇଁଫୁଲ ପାଖୁଡ଼ାରେ ଅଳକାର ରଚନା
ଅଳସୀ ନଦୀର କୋଳ ଜୋଛନାର ଝୁଲଣା ।୧।

ମାଖି ହୋଇ ନିଶୀଥରେ ଝିଲିମିଲି ଜୋଛନା
ଶାରଦ ଶିଶିର ନୀରେ ଧୋଇ ତନୁ ତନିମା
ଲତିକା ଅପରାଜିତା ହସେ ଢାଙ୍କି ଓଢଣା ।୨।

ଭିଜିଭିଜି ଜୋଛନାରେ ଶେଫାଳିର କୁସୁମ
ବାଟୋଇର ମନ ବାନ୍ଧେ ରଚି ଶୋଭା ସୁଷମ
ଲାଗେ ସତେ କ୍ଷୀର ସିନ୍ଧୁ କିବା ମହୀମଣ୍ଡନା ।୩।



## ବିଶ୍ୱାସର ମୂଲ୍ୟ

ବିଶ୍ୱାସେ ମିଳନ୍ତି ହରି
ତର୍କେ ବହୁ ଦୂର
ବିଶ୍ୱାସେ ବାରି ଗାଡ଼ିଆ
ପ୍ରୟାଗ ପୁଷ୍କର ।୦।

ବିଶ୍ୱାସରେ ଖମ୍ବୁ ଉଭା
ନରସିଂହ ମୂର୍ତ୍ତି
ବିଶ୍ୱାସେ କୋଟି ବସନ
ଦ୍ରୌପଦୀଙ୍କୁ ପ୍ରାପ୍ତି
ବିଶ୍ୱାସେ ଅମୃତ ହେଲା ମୀରାଙ୍କୁ ଜହର ।୧।

ଆସିବେ ବୋଲି ବିଶ୍ୱାସ
ଶବରୀ ମନରେ
ବିଶ୍ୱାସ ବଳେ ଆସିଲେ
ଶ୍ରୀରାମ ବନରେ
ଚାଖିଚାଖି ଠାକୁରଙ୍କୁ ଦେଲା ମିଠା ଫଳ ।୨।

ବିଶ୍ୱାସରେ ବାଲି ରଥେ
ଜଗନ୍ନାଥ ବିଜେ
ଭକତର ଭାବେ ବନ୍ଧା
ଭାବଗ୍ରାହୀ ନିଜେ
ତାଙ୍କ ଚରଣ କମଳେ କୋଟିଏ ଜୁହାର ।୩।

# ମେଘମାଳା

ଆଷାଢ଼ର ଏଇ ଆକାଶ ଦେଶରେ
ଆସେ ଯେବେ ମେଘମାଳା
ସୁରବାଳା ଚାରୁ ପଣତ କାନିରୁ
ଝରିପଡ଼େ ମୁକ୍ତାମାଳା ।୦।

ଧରାର ଆସନେ ସବୁଜ ଶୋଭାର
ହେବ ବୋଲି ଅଭିଷେକ
ମାଦଳ ବଜାଏ ବାଦଲ ଆକାଶେ
ବିଜୁଳି ଦିଏ ଆଲୋକ
ଚାତକର ଚିତ୍ତ ହୁଏ ଉଲ୍ଲସିତ, ମୟୂର ଯେ ମତୁଆଲା ।୧।

ବଣମଲ୍ଲୀ ବାସ ସାଜେ ଧୂପବାସ
ଧରା ନିରାଜନା ପାଇଁ
ମାଟିଦେହେଭରେ ଶତ ଶିହରଣ
କଦମ୍ବ ରୋମାଞ୍ଚ ହୋଇ
ମାଟି ଆକାଶର ମଧୁର ମିଳନ ଦଶଦିଗ ଆତ୍ମହରା ।୨।



# ବର୍ଷା

ଏଇ ଆଷାଢ଼ ଆକାଶେ
ଯେବେ ବର୍ଷା ଆସେ
ଯେବେ ବର୍ଷା ଆସେ
କାହା ସ୍ମୃତି ବୀଣା ବାଜେ
ମନ କାହିଁ ଦୂରେ ହଜେ ।୦।

କଦମ୍ବ ଫୁଲର ମହୁଆ ମହକ
ପବନ ଦୋଳିରେ ଖେଳେ
ଲତାର ଖୋସାରୁ ମାଳତୀ କୁସୁମ
ଝରି ପଡୁଥାଏ ତଳେ
ଝିରି ବରଷାରେ ମନ ତାତିଯାଏ, ଦେହସିନା ଖାଲି ଭିଜେ ।୧।

ପତରେ ପତରେ ଭରା ସବୁଜିମା
ମାଟିର ଅଳସୀ ନିଦ
ସବୁଜ କେଦାରେ ଶତ ଶିହରଣ
ପବନରେ ଧୀରଛନ୍ଦ
କାହା ହାତର ସେ ନରମ ପରଶେ, ସକାଳ ସପନ ଭାଙ୍ଗେ ।୨।



# ଆଶା

ବେଳେବେଳେ ଲାଗେ ଚାରିପଟେ ତୁମେ
ରହିଅଛି ମୁଁ ମଝିରେ
କଇବଲ୍ୟ ତୁମେ ସରଗ ଶୋଭନ
ବଇକୁଣ୍ଠ ଗନ୍ତାଘରେ ।
ମନ୍ଦାକିନୀ ତୁମେ ମାନସ ମୋହନ ଅଳକାର ଧାରେଧାରେ ।୧।

ବେଶୀ ବେଳ ତୁମେ ରହ ନାହିଁ କାହିଁ
ଯିବା ପାଇଁ ଛନ୍ନଛନ୍ନ
ଲଳିତ ଅଧର ହସର ରେଖାରେ
ପ୍ରଫୁଲ୍ଲିତ ତନୁ ମନ
ଆସିବା ବାଟକୁ ଚାହିଁଥାଏ ମୁହିଁ ଅପେକ୍ଷାର ତରୁତଳେ ।୨।

ନିଦାଘରେ ତୁମେ ବରଷା ଶୀତଳ
ଛଳଛଳ ମେଘମାଳା
ଶୀତର ସକାଳେ ଗଛର ଫାଙ୍କରେ
ବଢ଼ି ଆସୁଥିବା ଖରା
ତରୁ ଚୂଡ଼ା ଶୋଭୀ ସରୁ କିଶଳୟ ତୁମେ ନବ ବସନ୍ତରେ ।



# ଭାବନାର ଜାଲ

କେତେକେତେ ଭାବନାର ଜାଲେ ମନପକ୍ଷୀ
ଉଡ଼ିଉଡ଼ି ଯାଉଯାଉ ଯାଏ ଯଦି ଲାଖି
ଆକାଶର ଆଇନାରେ          ନିଜ ମୁହଁ ଦେଖି ଥରେ
ମାଟିକୁ ଫେରାଏ ତା'ର ଉଦାସିଆ ଆଖି ।୦।

ଆକାଶରେ ଘୋଟି ଆସେ କାହୁଁ କଳାମେଘ
ମାଡ଼ି ଆସେ ବତାସର ପ୍ରଳୟ ତାଣ୍ଡବ
ଝରଝର ବରଷାରେ          ଭିଜାଭିଜା ପର ଦେହେ
ହତାଶା ଯେ ନିଜ ନାଁ ଯାଏ ତହିଁ ଲେଖି ।୧।

ଘଡ଼ଘଡ଼ି ଶବ୍ଦରେ ଛାତି ଦକଦକ
ଚାହୁଁ ଚାହୁଁ ସବୁ ଲାଗେ ଅନ୍ଧାରି ମୂଲକ
ଲାଗେ ଆସିଗଲା ସତେ          ଶିକାରୀ ପିଞ୍ଜରା ହାତେ
ଧରି ନେଇ ପିଞ୍ଜରାରେ ଦବ ଏବେ ରଖି ।୨।

କେଉଁ ଅଦେଖା ହାତର ଇସାରାରେ ଆସି
ମୂଷାଟିଏ କାଟି ଦିଏ ଜାଲଟିକୁ ବସି
ଜାଲ ସବୁ କଟିଯାଏ ବନ୍ଧନ          ଯେ ତୁଟିଯାଏ
ଆଚମ୍ବିତ ଲାଗେ ଖାଲି ଏଇ କଥା ଦେଖି ।୩।



# ନଦୀ ଓ ସାଗର

କିଏ ଦେଲା ନଦୀପାଦେ ଏମିତିକା ଶକତି
ଯିବା ପାଇଁ ଧାଇଁଧାଇଁ ପାରାବାର କତିକି ।
ବନ୍ଧବାଡ଼ ପକାଇଲେ ସେ ଶକତି ଯାଏ ବଢ଼ି
ମଥା ପିଟେ ବାରମ୍ବାର କର ମାରି ଛାତିକି ।୦।

ନଦୀ କିବା ଗୋପବାଳା ସାଗର ମୁରଲୀ ଧରା
ମୁରଲୀ ତାନ କି ଶୁଭେ ଦୂର ନଦୀ ଶ୍ରୁତିକି ।୧।

ନଦୀ ଆକୁଳରେ ଧାଏଁ ସାଗର ବି ବାଟ ଚାହେଁ
ଲହରୀ ନେତ୍ରରେ ଚାହେଁ ଝାଉଁବନ ବୀଥିକି ।୨।

ଅମାପ ସେ ଅନୁରାଗ ସରି ତା'ର କିବା ହେବ
ତେଜ ତା'ର ସରି ନୁହେଁ ହୀରା ଲୀଳା ମୋତିକି ।୩।

ଭଲପାଇବାର ଗୀତି ଗାଏ ନୀଳ ସିନ୍ଧୁ ନିତି
ନଦୀ ଏକା ବୁଝିପାରେ ସେଇ ଗୀତି ରୀତିକି ।୪।

ନଦୀ ସାଗରର ପ୍ରୀତି ଅପ୍ରାକୃତ ପ୍ରେମ ମୂର୍ତ୍ତି
ଏକ ବିନା ଆରେକର ନାହିଁ ଗତି ମୁକ୍ତିକି ?୫।

ଅସୀମେ ସସୀମ ଆଶା ସସୀମେ ଅସୀମ ନିଶା
କିଏ କାହାଠାରୁ ବଡ଼, ନାହିଁ କିଛି ଯୁକ୍ତିକି ।୬।



## ମଣିଷର ମନ

ଦୁଃସ୍ୱପ୍ନର ଗନ୍ତାଘର ମଣିଷର ମନ
ପ୍ରତୀକ୍ଷାର ଅନ୍ୟନାମ ଆଜିର ଜୀବନ ।

ଭାଷା ଏଠି ଲାଭ ପାଇଁ
ଭାବ ଜଉଘର
ବିଶ୍ୱାସରେ ବିଷଦାନ
ଅଗ୍ନି ଅହଂକାର
ଅରୁଣ କିରଣଧାରେ ବାରୁଣୀର ଭ୍ରମ ।୧।

ନୀଳରଙ୍ଗ ଆକାଶରୁ
ଯାଏ ଚୋରି ହୋଇ
ଦିଗେ ଦିଗେ ଆକାଶରେ
ରକ୍ତବର୍ଣ୍ଣ ଛାଇ
ଦୁର୍ଘଟଣା ଯେ ଘଟଣା ନିତି ପ୍ରତିଦିନ ।୨।

ନିରିଜନ ଦ୍ୱିପହରେ
ନିଆଁ ଝୁଲ ଝରେ
ଲଳିତ ଲବଙ୍ଗଲତା
ଅକାଳେ ଝାଉଁଳେ
ସକାଳର ପଦ୍ମଫୁଲ ବିଷାଦେ ମଳିନ ।୩।

କୁହୁଡ଼ିର ରାଜପଣ
ସକାଳ ପହରେ
ଖାଲଖମା ଦିଶେ ନାହିଁ
ଜୀବନ ପଥରେ
ଛାଇ ମଧ୍ୟ ପଡ଼େ ନାହିଁ ଅନ୍ଧାରରେ ଲୀନ ।୪।

ସମୟର ଟାପୁ ଶବ୍ଦେ
ଭଙ୍ଗିଯାଏ ନିଦ
ଆଗକୁ ହୁଏନା ଚାଲି
ଛନ୍ଦିହୁଏ ପାଦ
ଲାଗେ ସବୁ ଖାଲିଖାଲି ଅନ୍ଧାର ଭୁବନ ।୫।



# ସ୍ୱପ୍ନ

ସେଇ ଦିନ ସବୁ ଆସନ୍ତା କି ସତେ
ଆଉ ଥରେ ଏ ଜୀବନେ
ଜୀବନର ବୀଥି ଭରିଯାଆନ୍ତା କି
ବସନ୍ତ କୋକିଳ ତାନେ ।୦।

ଆଉଥରେ କିବା ମଳୟ ପବନ
ଅଳସ ଭାଙ୍ଗନ୍ତା ଆସି
ପବନ ଢେଉରେ କୋଇଲିର କୁହୁ
ଆସନ୍ତା କି ଭାସିଭାସି
ଫଗୁଣର ଫଗୁ ବିଞ୍ଚି ହୋଇଯାନ୍ତା ଭାବନାର ଉପବନେ ।୧।

ଝରି ପଡ଼ନ୍ତା କି ନୀଳ ଆକାଶରୁ
ଜୋଛନାର ରୁପାରେଣୁ
ପତରଧାରରେ ଝୁଲିଝୁଲି ସିଏ
ବଜାନ୍ତା ମୋହନ ବେଣୁ
ବଣ ମଲ୍ଲୀଫୁଲ ଫୁଟି ଯାଆନ୍ତା କି କାନନ କୁଞ୍ଜବିତାନେ ।୨।

ମଣି ମାଣିକର ଦୀପ ଜଳନ୍ତା କି
ନବ କିଶଳୟ କୋଳେ
ମୋହନମାଧୁରୀ ଝରି ପଡ଼ନ୍ତା କି
ଦୀପଶିଖା ଧାରେଧାରେ
ସୁରବାଳା ପାଦ ପାଉଁଜି ଶବଦ ଶୁଭନ୍ତା ଅଳିଗୁଞ୍ଜନେ ।୩।

ଶୀତଳ ସମୀର ବହିଆସନ୍ତା କି
ପଦ୍ମପୋଖରୀକୁ ଛୁଇଁ
ନୂଆ ନୟନର କଟାକ୍ଷରଛଟା
ମନକୁ ନିଅନ୍ତା ମୋହି
ସରଗର ସୁଧା ଭରି ଏ ବସୁଧା ଉଛୁଳି ପଡ଼ନ୍ତା ମନେ ।୪।



# ମୂଲ୍ୟବୋଧ

ଚାହିଁ ରହିଛନ୍ତି ତୁମରି ବାଟକୁ
କେତେ ନାରୀ କେତେ ନର
ଧୀର ପାଦ ଥାପି ତୁମେ ଆସନ୍ତ କି
ହସନ୍ତା ଏ ଚରାଚର ।୦।

ଆଶାର ମୁକୁଳ ଭରିଯାଆନ୍ତା କି
ମନବନଲତା କୁଞ୍ଜେ
ପ୍ରୀତିର କଳିକା ମେଲିଯାଆନ୍ତା କି
ଅଳସୀ ଫଗୁଣ ସଞ୍ଜେ
ଆନନ୍ଦ ସୁବାସ ଅଳସ ଭାଙ୍ଗନ୍ତା ଝୁଲିଝୁଲି ନିରନ୍ତର ।୧।

ସମବେଦନାର ଚନ୍ଦନ ପ୍ରଲେପ
ମାଖି ହୋଇଯାନ୍ତା ଆସି
ମଧୁ ମମତାର କୁହୁକୁହୁ ତାନ
ଆସୁଥାନ୍ତା ଭାସିଭାସି
ଶୁଭ ଭାବନାର ଗଙ୍ଗାତରଙ୍ଗରେ ଅରୁଣିମା ଝଲମଲ ।୨।

ଏକତାର ଛନ୍ଦେ ହସି ମନ୍ଦେମନ୍ଦେ
ବିରାଜନ୍ତା ଦଶ ଦିଶ
ସମଭାବନାର କସ୍ତୁରୀ ଗନ୍ଧରେ
ବାସନ୍ତା କି ମନ ଦେଶ
ଅଳପ ହସର ନରମ ପରଶେ ଆସୁଥାନ୍ତା ଭାବାନ୍ତର ।୩।

ଚେତନାର ଚାରୁ ଚନ୍ଦ୍ରମଣ୍ଡଳରେ
କେତେ ତାରା ଦୀପ ଶିଖା
ଭଲ ପାଇବାର ପ୍ରଚ୍ଛଦପଟରେ
କେତେ କେତେ ରଙ୍ଗ ମଖା
ଫୁଟନ୍ତା ସେଦିନ ଧରା ଉପବନେ ସୁନାଶୀର ବନଫୁଲ ।୪।

ବି.ଦ୍ର.: ସୁନାଶୀର ବନଫୁଲ : ପାରିଜାତ ଫୁଲ

# ପାହିବ ରାତି

ପାହିବ ରାତି,
ହେବ ପାହାନ୍ତି
ବାଜିବ ଅରୁଣ କିରଣ କାନ୍ତି ।୦।

ବହିବ ଯେ ଚିର ମଧୁମଳୟ
ସାଜିବ ଏ ଧରା ସୁଧାବଳୟ
ମାନବ ହୋଇବ ଯେ ଦେବମାନବ, ଭରିଯିବ ସୁଖ ଶାନ୍ତି ।୧।

ସରଗ ହୋଇବ ମରତ ମାଟି
ଦେବତାଙ୍କ ବାସ ହୋଇବ ଏଠି
ବହିବ ଆନନ୍ଦ ମନ୍ଦାକିନୀ ଧାରା ଝରାଇ ଆଲୋକ ଦୀପ୍ତି ।୨।

ନୂଆ ହେବ ମନ ନୂଆ ପରାଣ
ନୂଆ ଦେହ ପୁଣି ନୂଆ ଜୀବନ
ଗଛ ପତରରେ ନୂଆ ସବୁଜିମା ଫୁଲ କଢ଼ି ପେନ୍ଥିପେନ୍ଥି ।୩।

ସ୍ନେହ ଦୟାକ୍ଷମା ଶ୍ରଦ୍ଧା ଅଶେଷ
ଜୀବନେ ଜୀବନେ ପ୍ରୀତି ପୀୟୂଷ
ସାରା ବିଶ୍ୱ ହେବ ଏକ ପରିବାର ବିରାଜିବ ବିଶ୍ୱପ୍ରୀତି ।୪।



# ଜହ୍ନରାତି

ଫୁଟା ମଲ୍ଲୀଫୁଲ ଶୋଭା ଜହ୍ନରାତି
ଧୀରଧୀର ତା'ର ଚାଲି
ମହୁଆ ଅତର ମାଖିଛି ପବନ
ଆନମନା ଝୁଲିଝୁଲି ।୦।

ଶ୍ୟାମ ବନାନୀର ଫାଙ୍କରେ ଫାଙ୍କରେ
ଜୋଛନା ପଡୁଛି ଖସି
ଛାଇ ଆଲୁଅର ଶୋଭା ସମ୍ଭାରରେ
କିଏ ଦେଉଛି କି ହସି ?
ନୂଆ ଦିନଟିଏ ଆସୁଛି କି ସତେ ନରମ ନୟନ ମେଲି ।୧।

ରୁପାଚାନ୍ଦୁଆର ବେଢ଼ଣରେ କିବା
ଝରା ତାରକସୀ କାମ
ଲାବଣ୍ୟଲହରୀ ଭାଙ୍ଗି ପଡୁଛି କି
ମନଲୋଭା ଅନୁପମ
ଦୂରଦିଗନ୍ତରୁ ସଂଗୀତର ସୁର ଭାସି ଆସେ ଥିରିଥିରି ।୨।

କିଏ ଆସିବେ କି ଦୂର ରାଇଜରୁ
ତାଙ୍କ ଅଭିଷେକ ପାଇଁ
ତାରାମାନେ ବସି ଜାଳନ୍ତି ଦୀପାଳି
ରାତି ଉଜାଗର ହୋଇ
ସକାଳ ଆସିବ ମରତ ହସିବ ନୂତନ ଆଲୋକ ଧରି ।୩।

# ଅବୁଝା ମନ

ସବୁଜ ପତର ପଡ଼ିଲା ଫିକା
ପତ୍ର ଝଡ଼ି ଗଛ ହେଲା ତ ଫାଙ୍କା
ଯେତେ ହିମଖଣ୍ଡ ଭାଙ୍ଗି ପଡୁଥିଲା
ସେତେ ବଢୁଥିଲା ଅନ୍ତରେ ତାତି ।୦।

ଚିତ୍ର ପରି ହୋଇ ମନରେ ଆଙ୍କି
ଲିଭିଲିଭି ଗଲା ନିଜକୁ ଢାଙ୍କି
ଉଜାଣି ଲହରୀ ପରିଗଲା ଫେରି ଅଧାଲେଖା ଚିଠି ନ ହେଲା 'ଇତି' ।୧।

ମଉଳା ପବନ ବାଉଳା ଗୀତି
ଅବୁଝା ମନରେ ଅନେକ ତାତି
ଭାବିଲେ ଦିଶୁଛି ମାନସ ଲତାରେ କଢ଼ ଧରିଅଛି ଅନେକ ସ୍ମୃତି ।୨।

ଚନ୍ଦନ ବନରେ ଲାଗିଲା ନିଆଁ
ଜଳିଲା ଯେତିକି ସେତିକି ଧୂଆଁ
ସେ ଧୂଆଁରେ ଆଉ ଦିଗ ନ ଦିଶିଲା ବାରିହେଲା ନାହିଁ ପାଦର ଗତି ।୩।

ଦିନ ରହିଲାନି ରହିଲା ଚିହ୍ନ
ସେହି ଚିହ୍ନ ହେଲା ସ୍ମୃତିର ଧନ
ସେହି ଧନଗଣି ଦିନ ହେଲା ରାତି, ରାତି ପୁଣିହୋଇଗଲା ପାହାନ୍ତି ।୪।
ତଥାପି ଅବୁଝା ମନରେ ଆଶା
ଖୋଜି ପାଇବାର ମହୁଆନିଶା
ବସନ୍ତ କାନନ ବନଲତା କୁଞ୍ଜେ ଆସିବ ମଞ୍ଜରୀ ପେନ୍ଥିକି ପେନ୍ଥି ।୫।

# ଆସିଛି ବରଷା

ମାଦଳ ବଜାଇ ରୋଷଣୀ ଜଳାଇ
ଆସିଛି ବରଷା ରାଜା
ଏ ଧରଣୀ ରାଣୀ ପକାଇ ଓଢ଼ଣା
କରୁଛି ରାଜାଙ୍କ ପୂଜା ।୦।

ମାଟିର ଆସନ ପାରିଅଛି ଧରା
ରାଜାଙ୍କ ଆସ୍ଥାନ ପାଇଁ
ସୁରଭି ବାସର ଧୂପବାସ ଦେଇ
ପବିତ୍ର କରିଛି ଭୂଇଁ
ପ୍ରଥମ ଛୁଆଁରେ ଶତ ଶିହରଣ କଦମ୍ବ ଫୁଲରେ ସଜ୍ଜା ।୧।

ଜଳଧାରା ଝରେ ଆକାଶ ଦେଶରୁ
ସତେ କି ଅମୃତ ଧାରା
ଚାତକ ପରାୟେ ପାନ କରେ ତାକୁ
ଏ ଧୂଳି ମାଟିର ଧରା
ମାଳତୀ ଫୁଲରେ କବରୀ ସଜାଇ ମାଟି ମନ ପ୍ରେମେ ଭିଜା ।୨।



# ତୁମେ

ବନ୍ଧୁ ତୁମେ ଆସି ଅଳ୍ପଅଳ୍ପ ହସି
ଦେଇଗଲ ମିଠାବାସ
ସେଇ ଦିନରୁ ମୁଁ ଭୁଲିପାରୁ ନାହିଁ
ତୁମର ସେ ଅଧାହସ ।୦।

ତୁମ ଅନୁରାଗ ମାଖି ଦେଇଗଲା
ମୋ ପ୍ରାଣେ ସୁରଭି ଗନ୍ଧ
ତୁମରି ପରଶ ଭରିଲା ଜୀବନେ
ଲଳିତ ମଧୁର ଛନ୍ଦ
ସେଇ ଛନ୍ଦରେ ମୁଁ ଛନ୍ଦି ହୋଇଗଲି ଦିନଦିନ ବର୍ଷ ମାସ ।୧।

ଫୁଟିଗଲା ମୋର ମନ ଉପବନେ
ମହୁଆ ଲାଜୁଆ ଫୁଲ
ମହମହ ବାସେ ଦିଗ ମହକିଲା
ଦିଶୁଥିଲା ଝଲମଲ
ସରଗ ଆସିଲା ନଇଁ ଧୀରେଧୀରେ ସାଜି ବିମୋହନ ବେଶ ।୨।

ନୂଆ ଜୀବନର ସୁନେଲି କିରଣ
ନନ୍ଦନ ରଚିଲା ଆସି
ତୁମ କଥା ଭାବି ସେଇ ଦିନରୁ ମୁଁ
ଆନମନା ଦିବାନିଶି
ଆଖି ଆଇନାରେ ତୁମ ରୂପ ଦିଶେ, କାନେ ଶୁଭେ ତୁମ ହସ ।୪।



## କିଏ ତୁମେ ?

ପ୍ରଥମ ଦେଖାରେ ମନ ନେଲ କିଣି
ଦେଇଗଲ ମଧୁ ବାସ
ସେଇ ଦିନରୁ ମୁଁ ଭୁଲିପାରୁ ନାହିଁ
ତୁମର ସେ ଅଧାହସ ।୦।
ଚାରୁ ଚାହାଣିରୁ ଝରି ପଡୁଥିଲା
ମୋହନ ମାଦକ ମାଳି
ଭାଙ୍ଗି ପଡୁଥିଲା ସାଗର ଲହରୀ
ସିକତାରେ ଯାଇ ମେଳି
ଝାଉଁ ବନବୀଥି ଗାଉଥିଲା ମନତୋଷ ଗୀତି ଶୁଣିଶୁଣି ।୧।

କହୁଥିଲ ତୁମେ ଅଳପ ଅଳପ
କଥାରେ ଅମୃତ ଧାର
ସେ ଧାରା ପରଶେ ମନ ଉପବନେ
ଫୁଟୁଥିଲା ସଜଫୁଲ
ଭଙ୍ଗାଅଳସରେ ମୋହନ ବିଳାସ, ତନୁରେ କମଳବାସ ।୨।

ଆଉ ଥରେ ତୁମ ଦେଖା ମିଳନ୍ତା କି
ଜୀବନର ଚଲାପଥେ
ପ୍ରୀତି ପାରିଜାତ ଫୁଟିଯାଆନ୍ତା କି
ଅପେକ୍ଷାର ପଥପ୍ରାନ୍ତେ
ମରତ ମାଟିରେ ବିରାଜନ୍ତା ଆସି ଚୈତ୍ରରଥୀ ମଧୁମାସ ।୩।



## ପ୍ରତୀକ୍ଷା

ଯେଦିନ ଶ୍ରାବଣ କହିଦେଇ ଗଲା ଫଗୁଣ ଆସୁଛି ବୋଲି
ସେଦିନୁ ଫଗୁଣ ବାଟମୁଁ ଚାହିଁଛି ପଣା କବାଟ ଖୋଲି । ଆ।
ମାନସ ପଟରେ ଆଙ୍କି ମୁଁ ଦେଇଛି
ବସନ୍ତର ଛବି ଯେତେ
ନବକିଶଳୟ କୁଞ୍ଜରେ ଜଳାଇ
ମାଣିକ୍ୟର ଦୀପକେତେ ।
ଆମ୍ରବଉଳର ଫାଙ୍କରେ ଫାଙ୍କରେ ମଳୟର ଲୁଚକାଳି ।୧।

ଧରାଧୂଳି ହେବ ଚନ୍ଦନର ରେଣୁ
ଫଗୁଣର ପାଦ ବାଜି
ପ୍ରୀତି ଉପବନେ ଗୀତିର ଗୁଞ୍ଜନେ
ମନ ଯିବ ପ୍ରେମେମଜ୍ଜି ।
ପାରିଜାତ ଆସି ଫୁଟି ଯିବ ହସି ପାଖୁଡ଼ା ପାଖୁଡ଼ା ମେଲି ।୨।

ଫୁଟା ଶତଦଳ ପରି ଦିଶୁଥିବ
ସଜ ସକାଳର ବେଳା
ଅରୁଣ କିରଣେ ଦିଗ ଝଲମଲ
ଦିଶୁଥିବ ଝରାତୋରା
ଆନମନା ହୋଇ ବସିଥିବି ମୁହିଁ କବରୀରେ କଢ଼ମଲ୍ଲୀ ।୩।
ଭାସି ଆସୁଥିବ ପବନ ଦୋଳିରେ
କୋଇଲିର କୁହୁସ୍ୱର
ମାଟି, ମୋଦେହରେ ଫୁଟିଥିବକେତେ
ଧଳାନାଲି ଘାସଫୁଲ
ମୋ ମନ ଆକାଶେ ଚକା ଥାଳି ଜହ୍ନ ହସୁଥିବ ଖିଲିଖିଲି ।୪।



## ସ୍ଥପତି ସ୍ମରଣେ

ଶିଳ୍ପୀ ସିନା ନାହିଁ ଅଛି ଶିଳ୍ପକଳା
ମୂକସାକ୍ଷୀ ହେବା ପାଇଁ
ଶିଳ୍ପକଳା ଫାଙ୍କେ ଶିଳ୍ପୀ ମୁହଁ ଦିଶେ
କିଛି ଖରା କିଛି ଛାଇ ।୧।

ପଥରରେ ଅଙ୍କା ସରୁସରୁ ଲତା
ଲତାରେ ଫୁଟିଛି ଫୁଲ
ଫୁଲ ପାଖୁଡ଼ାରୁ ଲାବଣ୍ୟ ଝରଇ
ଜୋଛନାରେ ଝଲମଲ ।୨।

ମନ୍ଦିର ଗଠନ ବେଳାରେ ସେଦିନ
ଲାଗିଥିବେ ଶିଳ୍ପୀ କେତେ
ବଙ୍କା ହୋଇଥିବ କେତେ ଯେ ନିହାଣ
ପଥର ଖୋଳାରେ ସତେ ।୩।

ରାଜାଙ୍କ ଆଦେଶ ଶିରୋଧାର୍ଯ୍ୟ ଆହା
ତଳେ ନୁହେଁ ଥୋଇବାର
ତଳେ ଥୋଇ ଦେଲେ ସରିଗଲା କଥା
ଆସିବ ସଙ୍କଟ ଘୋର ।୪।

ଶିଳ୍ପୀ ଚିତ୍ତ କେତେ ମାଦକ ମଧୁର
କିଏ ବା ପାରିବ ବୁଝି
ନୀଳ ଆକାଶରେ ଚାଲିଥାଏ ସିଏ
ନୀହାରିକା ଖୋଜିଖୋଜି ।୫।

ଦୂରାଗତ ଶିଳ୍ପୀ ମନ ବନାନୀରେ
ଲାଗିଯାଉଥିବ ନିଆଁ
କିଶଳୟ କୁଞ୍ଜେ ଶୁଭୁଥିବ ଯେବେ
କୋଇଲିର କୁହୁ ଆହା ।୬।

ଅଲକ୍ଷ୍ୟରେ ତା'ର ଖସି ପଡ଼ିଥିବ
ହାତରୁ ନିହାଣ ସତେ
କାହା ମୁଖ ଛବି ଝଟଝଟ ହୋଇ
ଦିଶୁଥିବ ନେତ୍ର ପଥେ ।୭।

ଭାବସାଗରରେ ଉଠୁଥିବ କେତେ
ଛଳଛଳ ବୀଚିମାଳା
ରାଜାଙ୍କ ଆଦେଶ ମନେପଡ଼ିଗଲେ
ଭଙ୍ଗା ପଡୁଥିବ ପରା ।୮।

ଶିଳ୍ପୀ ତ ଯାଇଛି ଅଫେରା ରାଇଜେ
ଆଉ ଫେରିବାର ନାହିଁ
ରଜାବାଟ ନୁହେଁ, ଶିଳ୍ପୀ ବାଟ ଚାହିଁ
ଶିଳ୍ପ କଳା ଅଛି ରହି ।୯।

ସକାଳେ ଚାହିଁଛି ସଂଜରେ ଚାହିଁଛି
ଆସିବ ଆସିବ ବୋଲି
ଶିଳ୍ପୀ ଦରଶନେ ଭରିଯିବ
ନୟନର ଭିକ୍ଷା ଝୁଲି ।୧୦।

(କୋଣାର୍କମନ୍ଦିର ଦର୍ଶନ ପରେ)

## ଛନ୍ଦାଚରଣ !

ତୁମ ବାଙ୍କଚୂଳେ ଶିଖଣ୍ଡ ଝଟକେ
ଖଞ୍ଜା ପୁଞ୍ଜାପୁଞ୍ଜା ମଲ୍ଲୀ
ଇନ୍ଦ୍ରଝୁମ୍ପା ଝୁଲେ କୁଞ୍ଚିତ କୁନ୍ତଳେ
ଝରା ହୀରା ମୋତି ମାଳି ।୦।

ଆଖି ଦୁଇ ତୁମ ଅମଳ କମଳ
ଅଧର ବଧୂଲି ଫୁଲ
ତିଳଫୁଲ ଜିଣା ନାସାରେ ଶୋଭନ
ବସଣି ଅମୂଲ ମୂଲ
କଣ୍ଠେ ବନମାଳ ଲଳିତ ମଞ୍ଜୁଳ, ନାଚୁଥାଏ ଝୁଲିଝୁଲି ।୧।

ତୁମ କରେ ଶୋଭା ମୋହନ ମୁରଲି
ଜଗତ ମୋହିବା ପାଇଁ
କଟୀରେ ତୁମର ପାଟ ପୀତାମ୍ବର
ଲମ୍ବିଲୋଟେ ଭୂଇଁ ଛୁଇଁ
ତୁମ ପାଦ ଶୋଭା, ତିନି ପୁର ଲୋଭା, ବୈକୁଣ୍ଠ କୈବଲ୍ୟ କଳି ।୨।

ଏତିକି ମାଗୁଣି ତୁମ ଛନ୍ଦାପାଦେ
ବନ୍ଧାରହୁ ମୋର ମନ
ମୋ ରସନା ଗାଉ ଦିବସ ରଜନୀ
ପ୍ରଭୁ ତୁମ ଯଶୋଗାନ
ବଣାନାବିକ ମୁଁ ସଂସାର ସାଗରେ ତୁମେ ବତୀଘର ସରି ।୩।

# ନୀରବ ନିଶୀଥେ

ନୀରବ ନିଶୀଥେ ସପନରେ ସତେ
ଆସିବ କି ପ୍ରଭୁ ଆସିବ କି,
ତୁମ ଦରଶନେ ସେ ମଧୁ ଲଗନେ
ମୋ ଚିତ୍ତ ପ୍ରେମରେ ଭାସିବ କି ? ।୦।
ତୁମର ସେ ଧୀର ମଧୁର ଚାହାଣି
ମୃଦୁ ମୃଦୁ ହସ ସୁଲଳିତଠାଣି
ଦରଶନେ ମୋର ମରୁଜୀବନରେ
ଆଶାଫୁଲ ଫୁଟି ବାସିବ କି ? ।୧।

ତୁମ ରୂପ ଶୋଭାଦେଖି ମୋର ଆଖି
ଲୁହେ ଭିଜିଭିଜି ରହିଯିବ ଲାଖି
ସରଗର ସୁଧା ଅବତରି ଆସି
ସତେ କି ମୋ' ହାତେ ଖସିବ କି ? ।୨।

ରାଜ ଆସନରେ ବସିଥିବ ତୁମେ
ପାଦତଳେ ତୁମ ବସିଥିବି ପ୍ରେମେ
ବରଷାର ଧାରା ହୋଇ ତୁମେ ପରା
ମୋ ଚିତ୍ତ ଚାତକ ତୋଷିବ କି ?



## ମାଆ ଦଶଭୁଜା

ମାଆ ଆସିଛିରେ ବିଜୟ ବାନାକୁ
ଉଡ଼ାଇ ଉଡ଼ାଇ ତା'ର
ଶରତ ସକାଳ ଅଞ୍ଜଳିରେ ଭରା
ଶେଫାଳିର ପୂଜାଫୁଲ ।୦।

ଧଳା ମେଘ ଭାସେ ନୀଳ ଆକାଶରେ
ତରଣୀ ପରାୟ ହୋଇ
ବନ ଉପବନ ଶ୍ୟାମଳ ଶୋଭନ
ଶୋଭାର ଉପମା ନାହିଁ
ତା' ପାଦ ପରଶେ ହସି ଉଠୁଅଛି ମରତର ବାଲିଘର ।୧।

ନଦୀ ସାଜି ଅଛି ଦରପଣ ଆଜି
ମାଆ ନିରଜନା ପାଇଁ
ଦିଗଦିଗ ମଣ୍ଡି ସାଜେ କାଶତଣ୍ଡୀ
ଆଲଟ ଚାମର ହୋଇ
କେବେକେବେ ଝରେ ବରଷା ଅସରେ ଧୋଇ ଦିଏ ମହୀତଳ [illegible]

ଅପରାଜିତାର ନୀଳ ରଙ୍ଗ ଚୋର
ଦୂର ପରବତ ଧାରେ
ସରଗରୁ ହସି ପଡୁଛି କି ଖସି
ଲଳିତ ଲାବଣ୍ୟ ତଳେ
ଦିଗ ପରିମଳ, ପବନ ବିମଳ, ଆନନ୍ଦର ଗନ୍ତାଘର ।୩।

ଝଲମଲ ଝରେ ଜହ୍ନରୁ ଜୋଛନା
ସରଗର ସୁଧାଧାରା
ଝରା ଚାନ୍ଦିନୀରେ ତାରକସୀ କାମ
ଚଉଦିଗ ଆତ୍ମହରା
ଦିଗ ଦେଉଅଛି ରୁପାର ଗହଣା, ମାଆ ପାଇଁ ଉପହାର ।୪।



## ପୂର୍ଣ୍ଣିମା ଇନ୍ଦୁ

ବନ୍ଧୁ ଯଦି କିଏ ଥାଏ ଜୀବନରେ
ବନ୍ଧୁ ତୁମେ ଦୀନବନ୍ଧୁ ।
ମଧୁ ଯଦି କିଛି ଥାଏ ଜୀବନରେ
ମଧୁ ତୁମେ ପଦ୍ମମଧୁ ।୦।
ଆଶା ଯଦି କିଛି ଥାଏ ଜୀବନରେ
ତୁମେ ବଞ୍ଚିବାର ଆଶା
ନିଶା ଯଦି କିଛି ଥାଏ ଜୀବନରେ
ତୁମକୁ ପାଇବା ନିଶା
ଏ ଜୀବନ ଯଦି ନଦୀଧାର ହୁଏ ତୁମେ ତ ସୁନୀଳ ସିନ୍ଧୁ ।୧।

ଭାଷା ଯଦି କିଛି ଥାଏ ଜୀବନରେ
ତୁମେ ତ ଓଁକାର ଭାଷା
ଉଷାଲୋକ ଯଦି ଥାଏ ଜୀବନରେ
ତୁମେ ତ ଆଶିଷ ଉଷା
ଏ ଜୀବନ ଯଦି ଚକୋର ସମାନ, ତୁମେ ତ ପୂର୍ଣ୍ଣିମା ଇନ୍ଦୁ ।୨।

ଗୁରୁ ଯଦି କିଏ ଥାଏ ଜୀବନରେ
ତୁମେ ତ ଜଗତ ଗୁରୁ
ଦାତା ଯଦି କିଏ ଥାଏ ମରତରେ
ତୁମେ ତ କଳପତରୁ
ଏ ଜୀବନ ଯଦି ଭାବଟିଏ ହୁଏ, ତୁମେ ମହାଭାବ ପ୍ରଭୁ ।



## ଏତିକି ଭିକ୍ଷା

ମୋ ମନର ମୁଦି ଜଗା
ବନ୍ଧା ଦେଲି ତତେ
ସେ ବନ୍ଧା କଉଡ଼ି ଦବୁ
ଆର ପାରେ ମତେ ।୦।

ଟଙ୍କା ସୁନା ଲୋଡ଼ା ନାହିଁ
ଏତିକି ମୋ ମାଗୁଣି
ମୋର ପାଖେପାଖେ ଥିବୁ
ମୋ ମଉଡ଼ ମଣି
ଅନ୍ଧାରରେ ଦୀପଶିଖା ଜାଳି ଦେବୁ କେତେ ।୧।

ଜନମ ଜନମ ପାଇଁ
ମାଗୁଛି ମୁଁ ଏତିକି
ଦୁଃଖ ବେଳେ ଦୁଃଖବନ୍ଧୁ
ଆସିବୁ ମୋ କତିକି
ହାତ ଧରି ଚଳାଇବୁ ଜୀବନର ପଥେ ।୨।

ଧନମାନ ଗଉରବ
ଲୋଡ଼ା ନାହିଁ ମୋହର
ମନଭରି ଗାଇବିରେ
ଭଜନ ମୁଁ ତୋହର
ନାଚୁଥିବି ମାରିତାଳି ତୋ ଭକତ ସାଥେ ।୩।

# କସ୍ତୁରୀମୃଗ

ମୋ' ଭିତରେ ଅଛି ଚନ୍ଦନ ସୁବାସ
ଅଛି ମନ୍ଦାକିନୀ ଧାରା
ବାଉଳା ହୋଇ ମୁଁ ବାହାରେ ବୁଲୁଛି
ନମାନି ବରଷା ଖରା ।୦।
ମୋ' ଭିତରେ ଝୁଲେ ମଳୟ ମଧୁରେ
କୁସୁମିତ ବନ ଲତା
ଗୁଣୁଗୁଣୁ ହୋଇ ଭଅଁର ଗାଉଛି
ଲଳିତ ମୋହନ ଗାଥା
ସେସବୁ ନଦେଖି ସେସବୁ ନ ଶୁଣି ବାହାରେ ମୁଁ ଦିଗହରା ।୧।
ମୋହର ଅନ୍ତରେ ପ୍ରେମ ପାରାବାରେ
ନାଚୁଛି ଲହରୀମାଳା
ଲହରୀ ନୁହେଁ ସେ ଭରା କଳସରୁ
ଉଛୁଳଇ ସୁଧାଧାରା
ତାକୁ ମୁଁ ନ ଦେଖି ତାକୁ ମୁଁ ନ ଚାଖି କାମନାରେ ଦିଗହରା ।୨।
ସାତସୁରେ ବାଜେ ମୋହନ ମୁରଲି
ରହି ରହି ଦୂରେ ଦୂରେ
ଧାନକ୍ଷେତ ଧାରେ ସବୁଜ ଶୋଭାରେ
ଅଳସୀ ପବନ ଖେଳେ
ତାକୁ ମୁଁ ନ ଶୁଣି ତାକୁ ମୁଁ ନ ଦେଖି ବାସନାରେ ବାସହରା [illegible]
ମୋ ସାଥିରେ କିଏ ଖେଳୁଅଛି ପରା
କେତେ ଲୁଚକାଳି ଖେଳ
ବେଳେବେଳେ ମତେ ଛୁଇଁଯାଏ ଆହା
ନରମ ହାତ କାହାର
ତାକୁ ମୁଁ ନ ଖୋଜି, ବାତୁଳ ପରାୟେ ବୁଲୁଛି ଦୁନିଆଁ ସାରା ।୪।

# ତୁମେ ହିଁ ସବୁ

ସବୁ ତୁମରି ଇଛାରେ ହୁଏ।
ଆଉ କେହି ନୁହେଁ କେହି ନୁହେଁ ।୦।

ସମସ୍ତେ କହନ୍ତି 'ମୁଁ' 'ମୁଁ' ବୋଲି
'ମୁଁ' 'ମୁଁ' କିଛି ନୁହେଁ
ତୁମେ ତ ସକଳ ଜୀବର ଜୀବନ
ବେଦର ଗାୟତ୍ରୀ ଛନ୍ଦ
ଫୁଟିଲାଫୁଲର ମିଠା ମିଠା ହସ
ଫଗୁଣ ମଳୟ ମନ୍ଦ
ତୁମରି ଭାବନା ହୁଏ ନାହିଁ ଆନ, ସବୁକିଛି ରୂପ ପାଏ ।୧।

ତୁମରି ଆଦେଶେ ମେଘମାଳା ଭାସେ
ବରଷେ ସଲିଳ ଧାର
ତୁମରି ଇଙ୍ଗିତେ ସାଗରରେ ନାଚେ
ଲହରୀମାଳକୁ ମାଳ।
ତୁମେ ହିଁ କରଣି, ତୁମେ ହିଁ କରତା, କରମ ତୁମରି ହୁଏ ।୨।



# ହେ ମହିମାମୟ

ଶିଶିରରେ ଭିଜା ଘାସଫୁଲ କଢ଼ି
          ମନୋରମ ଶୁଭ କାନ୍ତି
ଦେଖିଲି ଯେଦିନ ବୁଝିଲି ସେଦିନ
          ସେ ତୁମ ଅକ୍ଷୟ କୀର୍ତ୍ତି ।୦।

ଯେଦିନ ଦେଖିଲି ମେଘ ମୂଳକରେ
          ଇନ୍ଦ୍ରଧନୁ ରଙ୍ଗରେଖା
ରେଖା ନୁହେଁ ଧନୁ ବୁଣା ହୋଇଅଛି
          ସାତରଙ୍ଗେ ମଧୁମଖା
ଆକାଶେ ଉଡୁଛି ତୁମ ଯଶବାନା ବିଜୁଳିର ଶୁଭ୍ରଜ୍ୟୋତି ।୧।

ଯେଦିନ ଦେଖିଲି ପଦ୍ମପାଖୁଡ଼ାରେ
          ଢଳଢଳ ଜଳ ବିନ୍ଦୁ
କିରଣମାଳୀଙ୍କ କିରଣ ମାଳାରେ
          ଢଳଢଳ ନୀଳ ସିନ୍ଧୁ
ଚଉଦିଗ ଭରି ଆନନ୍ଦଲହରୀ ପ୍ଲାବନରେ ସତ୍ୟ ଶାନ୍ତି ।୨।

ଯେଦିନ ଶୁଣିଲି ପକ୍ଷୀ କାକଳିରେ
          ତୁମର ମହିମାଗାନ
ସେଦିନ ଜାଣିଲି ହେ ମହିମାମୟ
          ତୁମେ ପ୍ରେମୀ ତୁମେ ପ୍ରେମ
ଚରାଚର ଉଡ଼େ ତୁମରି ପ୍ରେମର ବିଜୟର ବୈଜୟନ୍ତୀ ।୩।

# ମାଗୁଣି

ଆଶା ମଧୁକୁଞ୍ଜ ପାରିଜାତ ତୁମେ
ଭାଷାରେ ଓଁକାର ଧ୍ୱନି ଭବ ଭୂମେ
ତୁମକୁ ପ୍ରଣାମ କରେ
ହେ ମହାମହିମ ପ୍ରିୟ ଅନୁପମ, ଶରଣ ଚରଣ ତଳେ ।୦।

ତୁମେ ନୀଳ ସିନ୍ଧୁ ଅନନ୍ତ ଅପାର
ମୁଁ ଯେ ଛୋଟ ନଦୀ ଅଙ୍କାବଙ୍କାଧାର
ତୁମକୁ ପାଇବା ପାଇଁ
ସକାଳରୁ ସଞ୍ଜ, ସଞ୍ଜରୁ ସକାଳ ଧାଇଁଛି ଆତୁର ହୋଇ ।୧।

ବାଟଜଗେ ମୋର ଗିରିବନ ଭୂଇଁ
ଆଗକୁ ଯିବାକୁ ବାଟ ଛାଡ଼େ ନାହିଁ
ତଥାପି ଅଛି ମୋ ଆଶା
ଦିନେ ମୁଁ ଛୁଇଁବି ତୁମରି ନୀଳିମା, ପାହିଯିବ ଅମାନିଶା ।୨।

ଜୀବନେ ଆସିବ ସୁନାର ସକାଳ
ନୂଆ ଚେତନାର ତେଜ ଝଲମଲ
ସେ ଦିନ ପାଇବି ସବୁ
ମିଳିଯିବ ମୋର ଜୀବନର ମୂଲ ସେଦିନ ହେ ମହାପ୍ରଭୁ ।୩।



## ପ୍ରଭୁ ତୁମେ କେଉଁଠାରେ ?

ତୁମେ କି ରହିଛ ନୀଳ ଆକାଶର
ନୀହାରିକା ଧାରେ ଧାରେ
ତୁମେ କି ରହିଛ ପୂର୍ଣ୍ଣିମା ଜହ୍ନର
ଶଶଚିହ୍ନ କଳା ଗାରେ ।୦।

ତୁମେ କି ରହିଛ ତାରା ଦୀପାଳିର
ସରୁସରୁ ଶିଖା ତଳେ
ଅବା ଅଛ ପ୍ରଭୁ ସାତରଙ୍ଗ ବୁଣା
ଇନ୍ଦ୍ରଧନୁ ରଙ୍ଗ କୋଳେ
ତୁମେ କି ରହିଛ ଶରତ ସକାଳ ଶିଶିର ମୁକୁତା ମାଳେ ?।୧।

ରହିଛ କି ତୁମେ ମାଟି ମହକରେ
ମଳୟର ମଧୁବାସେ
ରହିଛ କି ତୁମେ ବନ ଝରଣାର
କୁଞ୍ଚ କୁଞ୍ଚ ନୀଳ କେଶେ
ଅବା ରହିଛକି ସକାଳ ପକ୍ଷୀର ସାମଗାନ ସୁରେସୁରେ ? ।୨।

ମଣିଷ ମନରେ ତୁମେ କି ରହିଛ
ଭରା ଆଶା ଫୁଲଝରି
ଭଲପାଇବାର ସବୁଜ ବନରେ
କିଶଳୟ କେରି କେରି
ମମତା ମଧୁର ଭାଷା ପଦ୍ମବନେ ଆନନ୍ଦର ଅଳି ସୁରେ ।୩।

କିଛି ନ ଜାଣି ମୁଁ ଏତିକି ଜାଣିଛି
ଭିତରେ ବାହାରେ ତୁମେ
ତୁମେ ଅଛ ବୋଲି ଏ ସାରା ସଂସାର
ଆଗକୁ ଆଗକୁ ଗମେ
ମାଟିରୁ ଆକାଶ, ଆକାଶରୁ ମାଟି, ତୁମ ପୂଜାଦୀପ ଜଳେ ।୪।



# ନିବେଦନ

ଧନ ମାନ ଦେଇ ଭୁଲାଇ ଦେବନି
ଏତିକି ମୋ ନିବେଦନ
ଯଶ ଗଉରବ ମୋର କିବା ହେବ
ଲୋଡ଼ା ତୁମ ଦରଶନ ।୦।

ଜୀବନ ଆକାଶେ ନଇଁଗଲେ ସଞ୍ଜ
ହେବ ପୂର୍ଣ୍ଣିମାର ଶଶୀ
ହାତ ଧରି ବାଟ କଢ଼ାଇ ନେବ ହେ
ପାଦ ଯେବେ ଯିବ ଖସି
ଏତିକି ମିନତି ପାଖେ ପାଖେ ଥିବ, ତୁମେ ମୋର ପ୍ରିୟତମ ।୧।

ମୋ ମନର ମୁଦି ବନ୍ଧା ଦେଲି ଆଜି
ପ୍ରଭୁ ତୁମ ପାଦ ତଳେ
ସେ ବନ୍ଧା କଉଡ଼ି ଥାଉ ତୁମ ପାଶେ
ଦେବ ମତେ ଆରପାରେ
ତୁମରି ଆଶାରେ ତୁମ ଭରସାରେ ବିତିଯାଉ ମୋର ଦିନ ।୨।

ତୁମକୁ ପାଇଲେ ଜୀବନେ ମରଣେ
ଆଉ ଲୋଡ଼ା ନାହିଁ କିଛି
ଯାହାସବୁ ମତେ ମିଳିଛି ହେ ପ୍ରଭୁ
ତୁମେ ତ ଦେଇଛ ବାଛି
ପାଦକମଳରେ ପ୍ରଣାମ କରୁଛି ଘେନାକର ଅନୁପମ ।୩।

# ପ୍ରଣାମ ଚରଣେ

ଶୁଭ ଆଲୋକର ପରିଭାଷା ତୁମେ
ହତାଶାର ଅନ୍ଧକାରେ
ସବୁଜ ଶୋଭନ ମରୁଦ୍ୟାନ ତୁମେ
ମରୁଭୂମି ବାଲୁକାରେ ।୦।
ଭାବିବାକୁ ଭଲ ଲାଗେ ତୁମ କଥା
ଏକାଏକା ବସି ବସି
ଯେତେ ଭାବୁଥିଲେ ନୂଆ ଲାଗୁଥାଏ
ତୁମ ମୁହଁ ଯାଏ ଦିଶି
ତୁମେ ଦୟାମୟୀ ତୁମେ ସ୍ନେହମୟୀ, କ୍ଷମାମୟୀ ଏ ଧରାରେ ।୧।

ଭଲ ଲାଗେ ବସି ଗାଇବା ପାଇଁ କି
ତୁମ ପାଇଁ କେତେ ଗୀତ
ପକ୍ଷୀଙ୍କ କାକଳି ସୁରେସୁରେ ତହିଁ
ବାଜେ ବାଜା ସୁଲଳିତ
କୋଇଲିର କୁହୁ ଢାଳିଦିଏ ମହୁ ମୋ ଗୀତର ବାଦୀ ସୁରେ ।୨।
ଚରଣ ପରଶେ ଫୁଟି ଉଠେତେବ
ଚେତନାର ନୀଳକଇଁ
କରୁଣା ପରଶେ ଯାଏ ମାଆ ଶୁଖି
ବିପଦର ଭରାନଈ,
ତୁମରି ପଣତ ଘୋଡ଼ାଇ ରଖେ ମାଆ ଦୁନିଆକୁ ଆଦରରେ ।୩।

## ଗାଏ ତୁମ ଯଶ

ଗାଏ ତୁମ ଯଶ    ପ୍ରତି ପ୍ରଭାତରେ
ଫୁଲେ ଫୁଲେ ବସି ଅଳି
ସବୁଜ ପତର    ଗାଏ ତୁମ ଗୀତ
ପବନରେ ଝୁଲିଝୁଲି ।୦।

ପୂର୍ଣ୍ଣିମା ଜହ୍ନର    ଚାରୁ ଜୋଛନାରେ
ମାତିଯାଏ ଭିଜିଭିଜି
ମନେହୁଏ ଅବା    କ୍ଷୀର ସାଗର କି
ତମକୁ ଆସିଛି ଖୋଜି
ତୁମେ ଏ ମାଟିର ରାଜରାଜେଶ୍ୱର ରଙ୍କର ରତନ ମାଳି ।୧।

ବନ ଝରଣାର    କୁଳୁକୁଳତ ତାନ
ପ୍ରଭୁ ତୁମ ଯଶ ଗାନ
ପଦ୍ମ ପୋଖରୀର    ବାସ ମହମହ
ଭାଷାତୀତ ଅନୁପମ
ଭ୍ରମର ଗୁଞ୍ଜନେ ଶୁଭଶଂଙ୍ଖ ବାଜେ ସରସୀ ଯେ ପୂଜାଥାଳି ।

ପ୍ରଦୋଷ ବିହଙ୍ଗ    ଆସେ ନୀଡ଼େ ଫେରି
ଜପିଜପି ତୁମ ନାମ
ତାରାମାନେ ଜାଳି    ଜାଗର ଦୀପାଳି
ଖୋଜୁଥାନ୍ତି ତୁମ ପ୍ରେମ
ପାହାନ୍ତାପହରେ ପଡ଼ନ୍ତି ଘୁମାଇ ସାରା ରାତି ଭାଳିଭାଳି ।୩।

# ତୁମ ନାମ

ତୁମ ନାମ ଛଡ଼ା ଆଉ ସବୁ ନାମ
ଲାଗୁଛି ଅଲଣା ମତେ
ତୁମ କଥା ପରି ଆଉ କିଛି କଥା
ଲାଗୁନାହିଁ ଭଲ ଏତେ ।୦।

ମନ ମୋ କହୁଛି ସବୁକିଛି ଅଛି
ତୁମେ ଥିଲେ ପାଶେ ପାଶେ
ଭରି ଉଠୁଅଛି ମୋ ମନ ଗହନ
ମାଳତୀ ମଧୁର ବାସେ
ବିପଦ ବନ୍ଧନ ଘୁଞ୍ଚି ଯାଉଅଛି ମୋ ଜୀବନ ଚଲାପଥେ ।୧।

ମୋ ମନ ମୁକୁରେ ପଡୁଅଛି ଯେବେ
ତୁମ ରୂପ ପ୍ରତିବିମ୍ବ
ହତାଶା ଅନ୍ଧାର ଦୂରେ ଯାଏ ଚାଲି
ହଜିଯାଏ ତାର ଦମ୍ଭ
ତୁମେ ମୋର ଆଶା, ତୁମେ ମୋ ଭରସା, ଭବସିନ୍ଧୁ ସଇକତେ ।୨।

ତୁମରି ଆଶିଷ ମୋ ପାଇଁ ପୀୟୂଷ
ମନ୍ଦାକିନୀ ମଧୁଧାରା
ତୁମ ଦିବ୍ୟଦାନ ଆଦରର ଧନ
ମଣିମୁକୁତା ଓ ହୀରା
ଏଇ ଅଳି ମତେ ଜନମେ ଜନମେ ବନ୍ଧାରଖ ପାଦ ଗତେ ।୩।

# ଆଭୂମ ପ୍ରଣତି

ମାଆ ତୁମେ ଜଗତର କଲ୍ୟାଣ କାରିଣୀ
କ୍ଷମାମୟୀ ସ୍ନେହମୟୀ ଜଗତ ପାଳିନୀ ।୦।

ଅନ୍ଧର ଲଉଡ଼ି ମାଆ ଖଞ୍ଜ ଆଶାବାଡ଼ି
ଦରିଦ୍ର ମାଣିକମାଳା ମରୁଜଳବେଣୀ
ଆଶାର ପାହାନ୍ତି ତାରା ଆଲୋକ ବରଣୀ ।୧।

ତୁମରି ଆଶିଷ ମାଆ ସଂଜୀବନୀ ସୁଧା
ଦୂର କରେ ଜୀବନରୁ ଯେତେ ସବୁ ବାଧା
ଆନନ୍ଦର ମନ୍ଦାକିନୀ ମୁକତି ସରଣୀ ।୨।

ତୁମ ପାଦ ପରଶରେ ଫୁଟେ ଶତଦଳ
ପଙ୍ଗୁ ଗିରି ଲଂଘେ ମାଆ ମୂକଟି ବାଚାଳ
ଦାନବଦଳିନୀ ଦେବୀ ମହିଷାମର୍ଦ୍ଦିନୀ ।୩।

ଧୀରଧୀର ଏ ପବନ ତୁମରି ନିଃଶ୍ୱାସ
ଲତାକୁଞ୍ଜ କିଶଳୟେ ତୁମ ମୃଦୁହସ
ବୈଭବ ଦାୟିନୀ ଦେବୀ ଦୂରିତ ନାଶିନୀ ।୪।

ଆଭୂମ ପ୍ରଣାମ ମାଆ ତୁମରି ଚରଣେ
ସେବା ଦାସ କର ମତେ ଜନମେ ଜନମେ
ଦଶଭୁଜା ଦୟାମୟୀ ଜଗତ ଜ[redacted]ନୀ ।୫।

## ସେବା ଦାସ

ମାଆ ଦୟାମୟୀ ତୁମରି ଋଣକୁ
ପାରିବି ନାହିଁ ମୁଁ ଶୁଝି
ବୁଝିବାକୁ ଚାହିଁ ତୁମରି ମହିମା
ପାରୁ ନାହିଁ ମୁହିଁ ବୁଝି ।୦।

ଡାକିଲେ ଆକୁଳେ ଶୁଣ ତୁମେ ଡାକ
ପଠାଅ କରୁଣା ଫେଡ଼ିବାକୁ ଦୁଃଖ
ପାଉ ନାହିଁ କାହିଁ ତୁମପରି କେହି ଏ ସାରା ଜଗତ ଖୋଜି ।୧।

ଝୁଣ୍ଟି ପଡ଼ିଲେ ମୁଁ ନିଅ ତୁମେ ଟେକି
ସତ କହୁଛି ମାଆ ତୁମେ ତୁମ ଭଳି
ଲୁହ ପୋଛିଦିଅ କାନିପଣତରେ ଦୁଃଖ ଦାଉ ଯାଏ ଭାଜି ।୨।

ଚନ୍ଦ୍ରମଣ୍ଡଳରେ ତାରା ଦୀପ ଜଳେ
ମାଆ ତୁମ ପୂଜା ନିରାଜନା ବେଳେ
କୋଟି ପଦ୍ମକାନ୍ତି ଜିଣା ପାହାନ୍ତିରେ ଜଡ଼ଭାବ ଯାଏ ହଜି ।୫।

ତୁମ ପାଦ ତଳେ ରହୁ ମୋର ମନ
ବନ୍ଧାରଖ ମାଆ ମୋର ଏ ଜୀବନ
ଜନମେ ଜନମେ ସେବା ଦାସ କର ଏତିକି ମାଗୁଣି ଆଜି ।୬।



## ଡକ୍ଟର ଶରତ ଚନ୍ଦ୍ର ରଥ

ଜନ୍ମ ସ୍ଥାନ : ସାକ୍ଷୀଗୋପାଳ ନିକଟସ୍ଥ
ବୀରରାମଚନ୍ଦ୍ରପୁର ଶାସନ।
ପିତାଙ୍କ ନାମ : ଶ୍ରୀ ନୀଳାଦ୍ରି ବିହାରୀ ରଥ।
ମାତାଙ୍କ ନାମ : ଶ୍ରୀମତୀ ମନୋରମା ରଥ।

ଶିକ୍ଷା : ଏମ୍.ଏ., ଏମ୍.ଫିଲ୍, ପିଏଚ୍.ଡି।
୧୯୭୭ ମସିହାରେ ଓଡ଼ିଆ ଏମ୍.ଏ. ପରୀକ୍ଷାରେ
ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରି ଉତ୍କଳ
ବିଶ୍ୱବିଦ୍ୟାଳୟ ସ୍ୱର୍ଣ୍ଣପଦକ ଓ
ଭକ୍ତକବି ମଧୁସୂଦନ ରାଓ ସ୍ୱର୍ଣ୍ଣପଦକ ଲାଭ।

ବୃତ୍ତି : ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀବିହାରର ସ୍ନାତକୋତ୍ତର
ଓଡ଼ିଆ ବିଭାଗରେ ପ୍ରଫେସର ପଦରୁ ସେବାନିବୃତ୍ତ ହୋଇ
ମଧ୍ୟ ଅବିରତ ସାହିତ୍ୟ ସେବାରେ ନିମଗ୍ନ ।